# ଗଜପତି
# ସ୍ମାରକୀ ବକ୍ତୃତାମାଳା

୧୯୮୭

**ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟ**

**ପାରଳାଖେମୁଣ୍ଡି (ଓଡ଼ିଶା)**

# ଗଜପତି
# ସ୍ମାରକୀ ବକ୍ତୃତାମାଳା

## ୧୯୮୭

ପ୍ରଥମ ବକ୍ତୃତା—**ଭାରତବର୍ଷ ଓ ଓଡ଼ିଶା** ୧୮-୪-୮୭

ଦ୍ୱିତୀୟ ବକ୍ତୃତା—**ଓଡ଼ିଶା ଓ ଭାରତବର୍ଷ** ୧୯-୪-୮୭

ଉପସ୍ଥାପକ—**ଚିତ୍ତରଞ୍ଜନ ଦାସ**

**ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟ**

**ପାରଳାଖେମୁଣ୍ଡି**

# ଦୁଇପଦ

'ଗଜପତି ସ୍ମାରକୀ-ବକ୍ତୃତାମାଳା'ର ତୃତୀୟ ବକ୍ତା, ଓଡ଼ିଶାର ଲବ୍ଧ ପ୍ରତିଷ୍ଠିତ ସାହିତ୍ୟିକ, ବାଗ୍ମୀପ୍ରବର ପ୍ରଫେସର ଚିତ୍ତରଞ୍ଜନ ଦାସ କଟକ ଜିଲ୍ଲାର ବାଗଲପୁର ଗ୍ରାମରେ ୧୯୨୩ ମସିହା ଅକ୍ଟୋବର ମାସରେ ଜନ୍ମଗ୍ରହଣ କରନ୍ତି । ତୁଳସୀ ଦୁଇପଦରୁ ବାହିଲାପରି ପିଲାଦିନ ଅବସ୍ଥାରୁ ବିଦ୍ୟାଧ୍ୟୟନ ପ୍ରତି ତାଙ୍କର ଏକ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ ତଥା ଆଗ୍ରହ ପ୍ରକାଶିତ ହୁଏ । ରେଭେନ୍‌ସା କଲିଜିଏଟ୍ ସ୍କୁଲ, କଟକରୁ ଶିକ୍ଷା ସମାପ୍ତ କରି ସେ ରେଭେନ୍‌ସା ମହାବିଦ୍ୟାଳୟରେ ଅଧ୍ୟୟନ କରନ୍ତି । ତା'ପରେ ବିଶ୍ୱଭାରତୀ, ଶାନ୍ତିନିକେତନରୁ ସଫଳତାର ସହିତ ସ୍ନାତକୋତ୍ତର ଡିଗ୍ରୀ ହାସଲ କରି ଉଚ୍ଚତର ଶିକ୍ଷାଲାଭ କରିବାପାଇଁ ୟୁରୋପ ଯାତ୍ରା କରନ୍ତି । ସେଠାରେ ସେ କୋପେନ୍ ହେଗେନ୍ ବିଶ୍ୱବିଦ୍ୟାଳୟ, ଡେନ୍‌ମାର୍କରୁ ଶିକ୍ଷାଲାଭ କରି ବିଶ୍ୱଭାରତୀରେ ଅଧ୍ୟାପକ ହିସାବରେ ଅବସ୍ଥାପିତ ହୁଅନ୍ତି ଏବଂ ଗବେଷଣାତ୍ମକ ଅଧ୍ୟୟନ ପ୍ରତି ଅଧିକ ଆଗ୍ରହ ପ୍ରକାଶ କରନ୍ତି । ଅଧ୍ୟାପନା ତଥା ଗବେଷଣା କ୍ଷେତ୍ରରେ ତାଙ୍କର ବହୁମୁଖୀ ପ୍ରତିଭାର ପରିଚୟ ଆଜି କାହାରିଠାରେ ଅବିଦିତ ନୁହେଁ । ସେ ଗ୍ରାମୀଣ ଉଚ୍ଚ ଶିକ୍ଷାନୁଷ୍ଠାନ, ଆଗ୍ରା, ଉତ୍ତର ପ୍ରଦେଶ, ସୋନେନ୍‌ବର୍ଗ-ଆନ୍ତର୍ଜାତିକ ଶିକ୍ଷା କେନ୍ଦ୍ର, ପଶ୍ଚିମ ଜର୍ମାନୀ, ପେଷ୍ଟାଲୋଜି ଶିକ୍ଷାଶ୍ରମ (**Pestalozzi children's village**) ସୁଇଜରଲାଣ୍ଡ, ୟୁରୋପ, ଇସ୍ରାଏଲ ପ୍ରଭୃତି ସ୍ଥାନରେ ବିଭିନ୍ନ ସମୟରେ ଅଧ୍ୟାପନା ତଥା ଗବେଷଣାରେ ସମୟ, ଅତିବାହିତ କରିଛନ୍ତି । ଓଡ଼ିଆ, ଇଂରାଜୀ ଓ ସଂସ୍କୃତ ବ୍ୟତୀତ ହିନ୍ଦି, ବଙ୍ଗଳା, ଉର୍ଦ୍ଦୁ, କନ୍ନଡ଼, ଗୁଜରାଟୀ, ଡେନିଶ, ଜର୍ମାନ, ଫରାସୀ, ସୁଇଡ଼ିଶ୍ ଓ ଫିନିଶ୍ ପ୍ରଭୃତି ଭାଷାର ଅଧ୍ୟୟନ କେବଳ ଯେ କରିନାହାନ୍ତି, ଏ ସମସ୍ତ ସାହିତ୍ୟରେ ମଧ୍ୟ ତାଙ୍କର ଗଭୀର ପ୍ରବେଶ ଅଛି । ବର୍ତ୍ତମାନ ଓଡ଼ିଶାରେ ଶ୍ରୀ ଅରବିନ୍ଦଙ୍କର ଶିକ୍ଷା-ଦର୍ଶନରୁ ପ୍ରେରଣା ନେଇ ଯେଉଁ ଶିକ୍ଷା-ଆନ୍ଦୋଳନ କ୍ରମଶଃ ବିକଶିତ ହୋଇ ଆସୁଛି, ତାହାର ସହିତ ସେ ଅତ୍ୟନ୍ତ ସକ୍ରିୟ ଭାବରେ ସମ୍ପୃକ୍ତ ରହିଛନ୍ତି ।

ଏତଦ୍ ବ୍ୟତୀତ ସେ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗକୁ ନିଜର ରଚନା ଦ୍ୱାରା ଯେପରି ଋଦ୍ଧିମନ୍ତ କରିଛନ୍ତି ତା'ର ପଟାନ୍ତର ନାହିଁ । ଗବେଷଣାତ୍ମକ ପୁସ୍ତକ ହିସାବରେ 'ଅଚ୍ୟୁତାନନ୍ଦ ଓ ପଞ୍ଚସଖା ଧର୍ମ', 'ଓଡ଼ିଶାର ମହିମା ଧର୍ମ', 'A Study of the Medieval Religion and Literature of Orissa, Balaram Das', 'ଓଡ଼ିଆ ସାହିତ୍ୟର ସାଂସ୍କୃତିକ ବିକାଶଧାରା', 'ଓଡ଼ିଆ ସନ୍ଥ (ଭକ୍ତି) ସାହିତ୍ୟ', 'A Glimpse into Oriya Literature' ଇତ୍ୟାଦି କେବଳ ଉଲ୍ଲେଖଯୋଗ୍ୟ ନୁହେଁ, ଏକ ସ୍ୱତନ୍ତ୍ର ସ୍ୱାଦର ସ୍ୱାକ୍ଷର ବହନ କରିଥାନ୍ତି । ପ୍ରବନ୍ଧ ଓ ସମାଲୋଚନା କ୍ଷେତ୍ରରେ ମଧ୍ୟ ତାଙ୍କର 'ଶିଳା ଓ ଶାଳଗ୍ରାମ', 'ତରଙ୍ଗ ଓ ତଡ଼ିତ', 'ମା ନିଷାଦ', 'ପଶ୍ୟନ୍ତି ଦିଶି ଦିଶି', ସଂସ୍କୃତି ଓ ଓଡ଼ିଶା, କେତେ ଦିଗନ୍ତ, ଏକଲବ୍ୟ କାହାଣୀ ପ୍ରଭୃତି ସୁଖପାଠ୍ୟ ପୁସ୍ତକସମୂହ ତାଙ୍କର ମୌଳିକ ଚିନ୍ତା ଓ ଚେତନାର ବାର୍ତ୍ତାବହ ହିସାବରେ ସ୍ୱୀକୃତ । ଶଙ୍ଖାମ ମାଳରେ ସାତଦାନ, ନେପାଳ ପଥେ, ସାଗର ପାରି, ଶିଳାତୀର୍ଥ ଓ ଭାରତରୁ ଚୀନ ପ୍ରଭୃତି ଭ୍ରମଣ କାହାଣୀଗୁଡ଼ିକ ତାଙ୍କର ସୂକ୍ଷ୍ମ ଅନୁଭୂତି ତଥା ଗଭୀର ପର୍ଯ୍ୟବେକ୍ଷଣ ଦୃଷ୍ଟିଭଙ୍ଗୀର ପରିଚୟ ପ୍ରଦାନ କରନ୍ତି । ଜୀବନ ହିଁ ବିଦ୍ୟାଳୟ, ଜଙ୍ଗଲ ଘଡ଼ି ଓ ଶିକ୍ଷାରୁ ସଂକ୍ରମଣ ପ୍ରଭୃତି ଶିକ୍ଷା ସମ୍ବନ୍ଧୀୟ ପୁସ୍ତକ ଗୋଟିଏ ଗୋଟିଏ ମାଇଲଖୁଣ୍ଟ ହିସାବରେ ଓଡ଼ିଆ ସାହିତ୍ୟରେ ଦଣ୍ଡାୟମାନ । କାନ୍ତରେ ମୁଁ ସର୍ବଜ୍ଞ, ଜର୍ଣ୍ଣଦର୍ପଣେନ ପୁସ୍ତକଦ୍ୱୟ ରମ୍ୟ-ରଚନା ହିସାବରେ ସମସ୍ତଙ୍କର ଆଦରଣୀୟ । ସମାଜ : ପରିବର୍ତ୍ତନ ଓ ବିକାଶ, ସମାଜଶାସ୍ତ୍ର ସମ୍ବନ୍ଧରେ ତାଙ୍କର ଜ୍ଞାନବହରର ପରିଚୟ ଦିଏ । 'ରୋହିତର ଡାଏରୀ' । ତାଙ୍କର ଏକ ଅନବଦ୍ୟ ସୃଷ୍ଟି —ଏ ସମସ୍ତଙ୍କୁ ବାଦ୍ ଦେଲେ ଅନୁବାଦ ତଥା ସଂପାଦନା କ୍ଷେତ୍ରରେ ମଧ୍ୟ ତାଙ୍କର ଅବଦାନକୁ ଅସ୍ୱୀକାର କରିହେବ ନାହିଁ । ଶ୍ରୀ ଅରବିନ୍ଦଙ୍କର The Life Devine, Synthesis of Yoga, The Human Cycle ଇତ୍ୟାଦି ରବୀନ୍ଦ୍ରନାଥଙ୍କର ରୁଷିଆ ଚିଠି, ଗଳ୍ପଚୟନ, ହିତୋପଦେଶ ଇତ୍ୟାଦି, ମହାତ୍ମା ଗାନ୍ଧୀଙ୍କର To the students, Satyagraha, Saint Exuperyଙ୍କର The little prince (ମୂଳ ଫରାସୀରୁ), Albert Schweitzerଙ୍କର ଆତ୍ମଜୀବନୀ (ମୂଳ ଜର୍ମାନରୁ)

**E. F. Sillanpaa Nuorena Nukkunut** (ମୂଳ ଫିନଶ୍‌ରୁ) ଇତ୍ୟାଦି ଅନୁବାଦ ପୁସ୍ତକଗୁଡ଼ିକରୁ ତାଙ୍କର ମୌଳିକତା ତଥା ଭାଷା ଜ୍ଞାନର ପରିଚୟ ମିଳିଥାଏ । **Budhism and Jainism, Gandhi and Modern times, Folk Culture and literature** ପ୍ରଭୃତି ପୁସ୍ତକ ତାଙ୍କର ସମ୍ପାଦନା ସମ୍ପର୍କୀୟ ଜ୍ଞାନର ପରିଚୟରେ ସମୃଦ୍ଧ ।

ଏସବୁ ଶ୍ରୀଯୁକ୍ତ ଦାସଙ୍କର ବ୍ୟକ୍ତିତ୍ୱ ବା ସାହିତ୍ୟକୃତିର ଆଲୋଚନା ବା ସମାଲୋଚନା ନୁହେଁ—ଏହା କେବଳ ତାଙ୍କର ବହୁମୁଖୀ ପ୍ରତିଭା ତଥା ଅନନ୍ୟ ସାଧାରଣ କୃତିତ୍ୱର ସଂକ୍ଷିପ୍ତ ପରିଚୟ ମାତ୍ର—ଏହାକୁ ପାଠକ ସମାଜ ଉଦାର ଭାବରେ ଗ୍ରହଣ କରିବେ ବୋଲି ମୋର ଆଶା ।

—**ସଂପାଦକ**

# ମୁଖବନ୍ଧ

ଏହି ମହାବିଦ୍ୟାଳୟରେ ଗଜପତି ସ୍ମାରକୀ ବକ୍ତୃତାମାଳା ସଂସ୍ଥାଟି ଗଠିତ ହେବାର ତୃତୀୟ ବର୍ଷ ବିତିଯାଇଛି । ଉକ୍ତ ସଂସ୍ଥାର ଆନୁକୂଲ୍ୟରେ ଚଳିତ ଶିକ୍ଷାବର୍ଷ ୧୯୮୫-୮୬ର ଶେଷଭାଗ ଅପ୍ରେଲ ୨୮ ଏବଂ ୨୯ ତାରିଖରେ ଓଡ଼ିଶାର ଜଣେ ବିଶିଷ୍ଟ ବୁଦ୍ଧିଜୀବୀ ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସ ଆମର ନିମନ୍ତ୍ରଣ ରକ୍ଷାକରି 'ଭାରତବର୍ଷ ଓ ଓଡ଼ିଶା' ଏବଂ 'ଓଡ଼ିଶା ଓ ଭାରତବର୍ଷ' ଶିରୋନାମାରେ ଦୁଇଟି ବକ୍ତୃତା ପ୍ରଦାନ କରିଥିବାରୁ ଆମର ସେ ଧନ୍ୟବାଦାର୍ହ ।

ଶ୍ରୀଯୁକ୍ତ ଦାସଙ୍କ ଦୃଷ୍ଟିଭଙ୍ଗୀ ଅନୁଶୀଳନାତ୍ମକ ଓ ମୌଳିକ, 'ଭାରତ-ବର୍ଷ ଓ ଓଡ଼ିଶା' ଶୀର୍ଷକ ପ୍ରଥମ ବକ୍ତୃତାରେ ସେ ଦର୍ଶାଇଛନ୍ତି ଯେ ଭାରତବର୍ଷ ଯେଉଁ ଭୂଖଣ୍ଡକୁ କୁହାଯାଏ ଏବଂ ଯାହାର ସଭ୍ୟତା ଓ ସଂସ୍କୃତି ନେଇ ଆମେ ଏତେ ଗର୍ବ କରୁଁ ସେହି ଭୂଖଣ୍ଡଟି ବହୁବର୍ଷ ପୂର୍ବେ ଏତେ ଖଣ୍ଡବିଖଣ୍ଡିତ ହୋଇ ରହିଥିଲା ଯେ ସେଗୁଡ଼ିକର ସମନ୍ୱୟ ସେତେବେଳେ ସମ୍ଭବ ନଥିଲା । ପର୍ଯ୍ୟାୟକ୍ରମେ ଅଷ୍ଟ୍ରିକ୍, ଦ୍ରାବିଡ଼ ଓ ଆର୍ଯ୍ୟମାନଙ୍କର ଏ ଭୂମିରେ ବସତି ସ୍ଥାପନ ହେବା ଫଳରେ ପାରସ୍ପରିକ ପ୍ରଭାବ କିଛିଟା ସମନ୍ୱୟ ସମ୍ଭବ କରିପାରିଛି । ଆର୍ଯ୍ୟମାନଙ୍କ ପରେ ମଙ୍ଗୋଲ, ତାପରେ ମୁସଲମାନ ଓ ସବାଶେଷରେ ୟୁରୋପୀୟମାନେ ଆସିଛନ୍ତି । ଏସବୁ ସଂସ୍ରବର ପ୍ରତିଷ୍ଠା ବହୁ ବିକାଶର ମୂଳଭିତ୍ତି ହୋଇପାରିଛି । ବୌଦ୍ଧଧର୍ମର ଅଭ୍ୟୁଦୟ ହୋଇଛି ହିନ୍ଦୁ ବ୍ରାହ୍ମଣ୍ୟ କର୍ମକାଣ୍ଡମୟ ବାଧ୍ୟତା ଓ ରାଜାନୁଗତ ଧର୍ମ ବିରୁଦ୍ଧରେ ଏକ ସଂଗ୍ରାମ, ତଥାପି ହିନ୍ଦୁ ଓ ବୌଦ୍ଧଧର୍ମ ଉଭୟେ ଉଭୟଙ୍କୁ ପ୍ରଭାବିତ ଓ ପରିମାର୍ଜିତ କରିଅଛନ୍ତି । ସେହିପରି ମୁସଲମାନମାନେ ବହିରାକ୍ରମଣକାରୀ ଭାବରେ ପ୍ରବେଶ କରି ଏହି ମାଟି ସହିତ ସାମିଲ୍ ହେବା ସଙ୍ଗେ ସଙ୍ଗେ ତତ୍କାଳୀନ ଭାରତୀୟ କଳା, ଭାସ୍କର୍ଯ୍ୟ, ସ୍ଥାପତ୍ୟ, ସଙ୍ଗୀତ ଓ ସର୍ବୋପରି ଜୀବନ ଦର୍ଶନ ଓ ଦୃଷ୍ଟିଭଙ୍ଗୀକୁ ପ୍ରଭାବିତ କରିଛନ୍ତି ।

ୟୁରୋପୀୟମାନେ ମୁଖ୍ୟତଃ ବାଣିଜ୍ୟ କରିବାକୁ ଆସିଥିଲେହେଁ ସେମାନଙ୍କର ସମ୍ପର୍କ ସେତିକିରେ ସୀମିତ ନରହି ଆମର ସଂସ୍କୃତି ଓ ଜୀବନଧାରା ଉପରେ ଗଭୀର ଛାୟାପାତ କରିଛି । ସ୍ୱାଧୀନତା ପ୍ରାପ୍ତିର ନିକଟ ଅତୀତ ଓ ପରବର୍ତ୍ତୀ କାଳରେ ଏକଦର୍ଶୀ ରାଜନୀତିବିତ୍‌ଙ୍କ ଭାବବିହ୍ୱଳତା କିମ୍ବା ସଙ୍କୀର୍ଣ୍ଣ ସ୍ୱାଭିମାନ ଯୋଗୁଁ ସେସବୁ ସମ୍ୟକ୍ ଉପଲବ୍ଧ ନହେଲେହେଁ ଏହା ବର୍ତ୍ତମାନ ଯେ ବିଶେଷ ଭାବରେ ଆମର ଜୀବନ ଦୃଷ୍ଟିଭଙ୍ଗୀକୁ ପ୍ରଭାବିତ କରୁଅଛି ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ଜାତିର ପିତା ମହାତ୍ମା ଗାନ୍ଧୀ, ମହାଯୋଗୀ ଶ୍ରୀ ଅରବିନ୍ଦ ଏବଂ ବିଶ୍ୱକବି ରବୀନ୍ଦ୍ରନାଥ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟର ସ୍ଥାୟୀ ମୂଲ୍ୟବୋଧଗୁଡ଼ିକର ବାର୍ତ୍ତାବହ ହୋଇ ଆମକୁ ଲୁହାଇ ଲୁହାଇ ସେଇ କଥା ସୂଚାଇ ଦେଉଅଛନ୍ତି, ଓଡ଼ିଶାର ସନ୍ଥ ପରମ୍ପରା ଭାରତୀୟ ସନ୍ଥ ପରମ୍ପରାର ଏକ କ୍ଷୁଦ୍ର ସଂସ୍କରଣରୂପେ ପ୍ରାନ୍ତୀୟ ସଙ୍କୀର୍ଣ୍ଣତାକୁ ଅତିକ୍ରମ କରି ଆଧ୍ୟାତ୍ମିକତାର ଶାଶ୍ୱତ ସତ୍ୟଗୁଡ଼ିକୁ ସରଳ ଲୋକ ଭାଷାରେ ଉକୁଟାଇ ଅବିସ୍ମରଣୀୟ ହୋଇପାରିଛନ୍ତି, ଓଡ଼ିଶାର ପଞ୍ଚସଖା, ସନ୍ଥ ଭୀମଭୋଇ ପ୍ରଭୃତି ଏହାର ଗୋଟିଏ ଗୋଟିଏ ଜ୍ୱଳନ୍ତ ଦୃଷ୍ଟାନ୍ତ ।

କ୍ଷୁଦ୍ର ପରମ୍ପରାଗୁଡ଼ିକ ସମକେନ୍ଦ୍ରିକ ବୃତ୍ତଭଳି, ବୃହତ୍ ପରମ୍ପରା-ମାନଙ୍କ ଦ୍ୱାରା ନିୟନ୍ତ୍ରିତ ହେଲେହେଁ ତାଙ୍କର ସହିତର ସୁରକ୍ଷା ହୁଏ, ସେଗୁଡ଼ିକ ବିପଥଗାମୀ ହୋଇ ସ୍ୱସ୍ୱ ସ୍ୱାତନ୍ତ୍ର୍ୟ ବଜାୟ ରଖିବା ଉଦ୍ଦେଶ୍ୟରେ ମୂଳ ଉତ୍ପତ୍ତିକୁ ଭୁଲିଗଲେ ତାଙ୍କର ସହିତ ବିନଷ୍ଟ ହୋଇଥାଏ । ସମ୍ପ୍ରତି ଏଭଳି ଏକ ସମୟ ଆସି ପହଞ୍ଚିଛି ଯେଉଁଠି ଖାଲି ଧର୍ମ ନାମରେ ହିଂସାର ଆଶ୍ରୟ, ଭାଷା ନାମରେ ଉଗ୍ର ଆଞ୍ଚଳିକତାର ସୃଷ୍ଟି ଗୋଟିଏ ଗୋଟିଏ ସାଧାରଣ ଘଟଣା ହୋଇ ଉଠିଛି । ଓଡ଼ିଶାର ଭୌଗୋଳିକ ସ୍ଥିତି ଦୃଷ୍ଟିରୁ ଓଡ଼ିଶା ଉତ୍ତର ଭାରତ ଓ ଦକ୍ଷିଣ ଭାରତର ମିଳନର ସେତୁରୂପେ ଏତିକି-ବେଳେ ଏକ ସ୍ୱତନ୍ତ୍ର ଦାୟିତ୍ୱର ଅଧିକାରୀ ହୋଇଥିବାରୁ ଶ୍ରୀଯୁକ୍ତ ଦାସ ଓଡ଼ିଶା ନେତୃତ୍ୱକୁ ସେହି ଆହ୍ୱାନ ହିଁ ଦେଇଛନ୍ତି ।

ଦ୍ୱିତୀୟ ବକ୍ତୃତା 'ଓଡ଼ିଶା ଓ ଭାରତବର୍ଷ'ରେ ଓଡ଼ିଶାର ଭୌଗୋଳିକ ସୀମାରେଖା କପରି ଅସ୍ପଷ୍ଟ ଥିଲା ଏବଂ ଯାହାକୁ ତଥାକଥିତ ଓଡ଼ିଶା କୁହା

ଯାଉଥିଲା ତାହା ମୁସଲମାନ ଓ ପରେ ମରାଠାମାନଙ୍କ ଦ୍ୱାରା ଅଧିକୃତ ହୋଇ କଭଳି ଅରାଜକତାର ଚରମ ସୀମାରେ ପହଞ୍ଚି ଯାଇଥିଲା ତାହାହିଁ ଖୁବ୍ ପ୍ରାଞ୍ଜଳ ଭାବରେ ଉତ୍ଥାପନ କରିଛନ୍ତି । ଇଂରେଜମାନେ ଏତେବେଳେ ଓଡ଼ିଶା ଦଖଲ କରି ଏକ ପ୍ରଶାସନିକ ଶୃଙ୍ଖଳା ଆଣି ଦେଇଥିଲେ । ସେହି-ମାନଙ୍କ ଶାସନବେଳେ ହିଁ ଓଡ଼ିଆ ଭାଷାଭାଷୀ ସମସ୍ତ ଅଞ୍ଚଳକୁ ଏକ ଶାସନାଧୀନରେ ରଖିବାପାଇଁ ଉତ୍କଳ ସମ୍ମିଳନୀର ସୂତ୍ରପାତ ହେଲା ୧୯୦୩ ମସିହାରେ । ମଧୁସୂଦନ ଦାସ ତାହାର ନେତୃତ୍ୱ ନେଇଥିଲେ । ସେହିପରି ସର୍ବଭାରତୀୟ ସ୍ତରରେ ହୋଇଥିବା ଓଡ଼ିଶା ଜାତୀୟ ଆନ୍ଦୋଳନର ନେତୃତ୍ୱ ନେଇଥିଲେ ଗୋପବନ୍ଧୁ ଦାସ । ଉତ୍କଳ ସମ୍ମିଳନୀର ସ୍ୱର ଓ ଭୂମିକା ସର୍ବଭାରତୀୟ ଜାତୀୟ ଆନ୍ଦୋଳନର ସ୍ୱର ଓ ଭୂମିକାଠାରୁ ଥିଲା ସ୍ୱତନ୍ତ୍ର । ଗୋପବନ୍ଧୁ ଓଡ଼ିଶାର ଆଶା ଓ ଆକାଂକ୍ଷା ସମଗ୍ର ଭାରତୀୟ ଭୂଖଣ୍ଡର ସ୍ୱାଧୀନତା ଆନ୍ଦୋଳନର ଆଶା ଓ ଆକାଂକ୍ଷାର ମହାସ୍ରୋତ ସହିତ ସାମିଲ୍ କରିବାପାଇଁ ଚେଷ୍ଟିତ ଥିଲାବେଳେ ମଧୁବାବୁ ସେହିଭଳି ଏକ କାର୍ଯ୍ୟକଳାପକୁ ନାପସନ୍ଦ କରୁଥିଲେ, ବ୍ୟକ୍ତିତ୍ୱର ବୈଶିଷ୍ଟ୍ୟ ଦୃଷ୍ଟିରୁ ଉଭୟଙ୍କର ଚିନ୍ତାଧାରା ଥିଲା ପୃଥକ୍, ଯେପରି ଶ୍ରୀ ଅରବିନ୍ଦ ବା ଆଦିବେଦାନ୍ତ ବା ରବି ଠାକୁର ବା ନେତାଜୀ ସୁଭାଷଙ୍କ ଜୀବନ ଦର୍ଶନ ଓ ଜାତୀୟତା-ବୋଧ ମହାତ୍ମା ଗାନ୍ଧୀଙ୍କଠାରୁ ଥିଲା ଭିନ୍ନ । ଏକ କ୍ଲାନ୍ତ ପୁନରାବୃତ୍ତି ହେଲେହେଁ ଆମକୁ ମନେ ରଖିବାକୁ ହେବ ଯେ ପ୍ରତ୍ୟେକ ମନୀଷୀ ଧରା-ପୃଷ୍ଠରେ ଏକ ସ୍ୱତନ୍ତ୍ର ସନ୍ଦେଶ ନେଇ ଅବତୀର୍ଣ୍ଣ ହୁଅନ୍ତି । ଆମେ ସେଥିପାଇଁ ଆମ ଦୃଷ୍ଟିକୋଣରେ କଷଟି ପଥରରେ ପରଖି କାହାକୁ ଉଚ୍ଚରେ ବସାଇ କାହାକୁ ନିମ୍ନରେ ବସାଇବା ଭ୍ରମାତ୍ମକ ମନେହୁଏ । ଏହି ଦୃଷ୍ଟିରୁ ଚିତ୍ତବାବୁଙ୍କ ଅନୁଶୀଳନ ସଙ୍ଗେ ଅନେକେ ଏକମତ ନହେବା ଅସ୍ୱାଭାବିକ ନୁହେ ।

ପ୍ରାନ୍ତୀୟତା ଏବଂ ସ୍ୱାର୍ଥାନ୍ଧତା ମଣିଷ ମଣିଷ ଭିତରେ ମାନବିକତାର ସ୍ୱୀକାରୋକ୍ତି ତଥା ସାଂପ୍ରତିକ ଆହ୍ୱାନଗୁଡ଼ିକୁ କିପରି ଉପେକ୍ଷା କରିବୁଲିଛି ବକ୍ତୃତା ଶେଷ ଭାଗରେ ସେ କଥା ସୁସ୍ପଷ୍ଟ । ତେବେ ବୌଦ୍ଧିକତାର ଶାଳୀନ ବଳୟ ଅତିକ୍ରାନ୍ତ କରି କଟୁ ସମାଲୋଚନା, ବ୍ୟଙ୍ଗ ଓ ବକ୍ରୋକ୍ତିରେ

କେବଳ ଶାନ୍ତ ନରତ୍ୱ ଶତ୍ରୁବାବୁ ଉପସଂହାରରେ ରାଜନୈତିକ ରଙ୍ଗମଞ୍ଚକୁ ଲମ୍ଫ ଦେବାପାଇଁ ଚେଷ୍ଟା କରିଛନ୍ତି । ବ୍ୟକ୍ତିଗତ ଆନୁଗତ୍ୟ କିମ୍ବା ନିର୍ଦ୍ଦିଷ୍ଟ ମୂଲ୍ୟଗତ ସଚେତନତା ଯୋଗୁଁ ହେଉ ସେ ଏକ ନିର୍ଦ୍ଦିଷ୍ଟ ସମୟର ପରବର୍ତ୍ତୀ ପର୍ଯ୍ୟାୟର ଓଡ଼ିଶା ନେତୃତ୍ୱକୁ କଡ଼ା ସମାଲୋଚନା କରିଛନ୍ତି । ସ୍ୱାଧୀନୋତ୍ତର ଭାରତରେ ରାଜନୀତି ଏତେ ସଂଘର୍ଷ ଓ କନ୍ଦଳ ଦେଇ ଗତିକରି କଳୁଷିତ ହୋଇପଡ଼ିଛି ଯେ ବୁଦ୍ଧିଜୀବୀମାନେ ସେଥିରେ ପଶିବା ପାଇଁ ମୋଟେ ପସନ୍ଦ କରୁନାହାନ୍ତି, ଫଳତଃ ରାଜନୈତିକ ମାନ ଓ ପରଂପରା ଅଧୋଗାମୀ ହୋଇ-ପଡ଼ୁଛି । ସର୍ବଭାରତୀୟ ସ୍ତରରେ ପରିସ୍ଥିତି ଯଦି ଏହିଭଳି ହୁଏ, ଓଡ଼ିଶା ସେଥିରୁ ବାଦ୍ ପଡ଼ିନପାରେ, ତେବେ ଉପାନ୍ତ ଅଞ୍ଚଳରେ ଅବସ୍ଥିତ ଏକ ଶିକ୍ଷାୟତନର ବକ୍ତୃତା ମଞ୍ଚରୁ ଏହିଭଳି ଏକ ସମାଲୋଚନା ହୁଏତ ଅରଣ୍ୟରୋଦନଭଳି ମନେ ହୋଇପାରେ, ମତଦ୍ୱୈଧର ଅବକାଶ ଥିଲେହେଁ ବକ୍ତୃତା ଦୁଇଟିରେ ଶତ୍ରୁବାବୁଙ୍କ ବିଷୟ ଉପସ୍ଥାପନା, ମନୋଜ୍ଞ ଅନୁଶୀଳନ, ଶିଷ୍ଟଭାଷା ଓ ଦେଶଜ ଭାଷା ଦେଇ ବକ୍ତୃତାର ନିୟନ୍ତ୍ରିତ ମୋଡ଼ ଶ୍ରୋତା-ମାନଙ୍କୁ ଯେ ମୁଗ୍ଧ କରିଛି ସନ୍ଦେହ ନାହିଁ । ତତ୍ତୁଲ୍ୟ ଆନନ୍ଦ ଭାଷଣ ଦୁଇଟିର ଲିପିବଦ୍ଧ ସଂସ୍କରଣ ପାଠକମାନଙ୍କୁ ଦେଇପାରିଲେ ଆମର ଶ୍ରମ ସାର୍ଥକ ହେଲା ବୋଲି ମନେ କରିବୁ ।

ପରିଶେଷରେ ଶ୍ରୀଯୁକ୍ତ ଦାସଙ୍କ ଅକ୍ଳାନ୍ତ ଉଦ୍ୟମ ନିମନ୍ତେ କୃତଜ୍ଞତା ଜଣାଇବା ସଙ୍ଗେ ସଙ୍ଗେ ସ୍ୱର୍ଗତ କୃଷ୍ଣଚନ୍ଦ୍ର ଗଜପତିଙ୍କ ମହନୀୟ ପବିତ୍ର ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳୀ ଅର୍ପଣ କରୁଛୁ ।

**କୃଷ୍ଣଚନ୍ଦ୍ର ପଟ୍ଟନାୟକ**
ଅଧ୍ୟକ୍ଷ,
ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟ
ପାରଳାଖେମୁଣ୍ଡି

# ଭାରତବର୍ଷ ଓ ଓଡ଼ିଶା

ପୂର୍ବକାଳରେ ଭୂଖଣ୍ଡଗୁଡ଼ିକୁ ଦ୍ୱୀପ ବୋଲି କୁହାଯାଉଥିଲା । ପୁରାଣମାନଙ୍କରେ ଆମକୁ ଏହି ଦ୍ୱୀପଗୁଡ଼ିକର ବହୁ ବର୍ଣ୍ଣନା ମିଳିଥାଏ । ଦ୍ୱୀପ ବା ରାଜ୍ୟ ଗୁଡ଼ିକରେ ଯେତେବେଳେ ମନୁଷ୍ୟମାନେ ବାସ କରୁଥିଲେ । ଭାରତବର୍ଷରେ ଗୋଟିଏ ରାଜ୍ୟର ଅଧିବାସୀଙ୍କ ସହିତ ଆଉ ଗୋଟିଏ ରାଜ୍ୟର ଅଧିବାସୀ ମାନଙ୍କର ପ୍ରାୟ କୌଣସି ସମ୍ପର୍କ ନଥିଲା । ଭୌଗଳିକ ଦୂରତା ଗୁଡ଼ିକ ସାଂସ୍କୃତିକ ଦୂରତା ଗୁଡ଼ିକର ଏକ ବଡ଼ କାରଣ ହୋଇ ରହିଥିଲେ । ମନୁଷ୍ୟମାନଙ୍କୁ ପ୍ରଜା ବୋଲି କୁହାଯାଉଥିଲା । ମନୁଷ୍ୟମାନେ ସମସ୍ତେ ପ୍ରଜାପତିଙ୍କ ଠାରୁ ସମ୍ଭୂତ ହୋଇଛନ୍ତି ବୋଲି ଯେ ସେମାନଙ୍କୁ ସେପରି କୁହାଯାଉଥିଲା, ସେକଥା ଆଦୌ ନୁହେଁ । ବରଂ ଏକ ଅଧିକ ସତ୍ୟକଥା ହେଉଛି ଯେ ସେମାନେ କୌଣସି ନା କୌଣସି ରାଜାଙ୍କର ଅବଶ୍ୟ ପ୍ରଜା ଥିଲେ ଓ ସେହି ରାଜ୍ୟର ପ୍ରଜା ହେବାଟାହିଁ ସେମାନଙ୍କର ପ୍ରାୟ ସମ୍ପୂର୍ଣ୍ଣ ପରିଚୟ ହୋଇ ରହିଥିଲା । ରାଜାମାନେ ରାଜ୍ୟ ବିଜୟରେ ବାହାରୁଥିଲେ । ଜଣେ ରାଜା ହାରୁଥିଲେ ଓ ଆଉଜଣେ ଜୟଲାଭ କରୁଥିଲେ । ରାଜ୍ୟର ଆୟତନ ମାନଙ୍କରେ ହ୍ରାସ ଓ ବୃଦ୍ଧି ହେଉଥିଲା । ପ୍ରଜାମାନେ ନିଜ ରାଜାଙ୍କ ପକ୍ଷରେ ହିଁ ଯୁଦ୍ଧ କରୁଥିଲେ । ଧର୍ମ ରାଜାନୁଗତ ଥିଲା, ଜୀବନ ରାଜାନୁଗତ ହୋଇ ରହିଥିଲା । ତେଣୁ ଏକ ସଂସ୍କୃତି ପ୍ରେରିତ ଜୀବନକୁ ବଞ୍ଚିବାର ପ୍ରସ୍ଥ ଓ ପରିସରଗୁଡ଼ିକ ପ୍ରକୃତିରେ ଅତ୍ୟନ୍ତ ସୀମାବଦ୍ଧ ହୋଇ ରହିଥିଲା । ସୀମାବଦ୍ଧ ନ ହେବାର ସମ୍ଭବତଃ କୌଣସି ସମ୍ଭାବନା ହିଁ ନଥିଲା ।

ସଂସ୍କୃତି କହିଲେ କେବଳ ଅତୀତକୁ ହିଁ ବୁଝାଏ ନାହିଁ । ଯାହା ଥିଲା, କେବଳ ତାହାହିଁ ସଂସ୍କୃତି ନୁହେଁ, ଯାହା ଅଛି, ତାହା ମଧ୍ୟ ସଂସ୍କୃତି । ଅନେକ ସମୟରେ ଏକାଧିକ କାରଣ ବଶତଃ କେତେଟି କଳ୍ପନା କିମ୍ବଦନ୍ତୀକୁ ଏକାଠି ମିଶାଇ, ତାହାକୁ ଯଥା ସମ୍ଭବ ସୁରମ୍ୟ କରି ଦେଖାଇ ଆମେ ତାହାକୁ ହିଁ ସଂସ୍କୃତି ବୋଲି କହିଥାଉ । ବେଳେବେଳେ ବର୍ତ୍ତମାନର ଆହ୍ୱାନ ଗୁଡ଼ିକର ସମ୍ମୁଖୀନ ହୋଇ ନପାରି ଅଥବା ବର୍ତ୍ତମାନର ଅସମର୍ଥତା ଗୁଡ଼ିକ ଲାଗି ଆମେ ସ୍ୱୟଂ ଦାୟୀ ବୋଲି କହିବାକୁ ସମ୍ମତ ହୋଇ ନପାରି ଆମେ ଅତୀତ ଭିତରେ ଆଶ୍ରୟ ନେବାକୁ

ମନ କରିଥାଉ, ସେଥିରୁ ଆତ୍ମପ୍ରସାଦ ଲାଭ କରୁ ଏବଂ ତାହାକୁ ହିଁ ଏକ ସାଂସ୍କୃତିକ ବିନୋଦନ ବୋଲି ଭ୍ରମ କରିଥାଉ । ଏକ ଅବକ୍ଷୟ-ଯୁଗର ପଣ୍ଡିତମାନେ ଆମକୁ ସେହି ଭ୍ରମଗୁଡ଼ାକୁ ହିଁ ପୁଞ୍ଜି କରି ବାନ୍ଧି ରଖିବାରେ ଆମକୁ ଅନେକ ଖାଦ୍ୟ ଯୋଗାଇ ଦେଇଥାନ୍ତି । ସଂସ୍କୃତି ଏକ ପଳାୟନ ନୁହେଁ, ଏକ ସମ୍ପତ୍ତି ମଧ୍ୟ ନୁହେଁ ଏହା ଏକ ପ୍ରକ୍ରିୟା, ଏକ ବିବର୍ତ୍ତନଗତ ପ୍ରକ୍ରିୟା । ଗୋଟିଏ ଗୋଟିଏ ସମୂହ ଭାବରେ ଆମେ ସ୍ୱୟଂ ସେହି ପ୍ରକ୍ରିୟାଟିର ହିଁ ନିର୍ଦ୍ଧାରଣ କରୁଛୁ । ଯେଉଁ ସମୂହ ଯେତିକି ସମଗ୍ର ଭାବରେ ଜୀବନର ସମ୍ମୁଖୀନ ହୁଏ, ସିଏ ସେତିକି ଯଥାର୍ଥ ଭାବରେ ତାର ସଂସ୍କୃତିକୁ ବଞ୍ଚିବା ଲାଗି ସମର୍ଥ ହୋଇଥାଏ । ସମୂହ କହିଲେ କେବଳ ବ୍ୟକ୍ତି-ମାନଙ୍କର ଏକ ସମାହାରକୁ ବୁଝାଏ ନାହିଁ । ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ରହିଥିବା ଏକ ସମ୍ବନ୍ଧକୁ ବୁଝାଏ । ସେହି ସମ୍ବନ୍ଧଗୁଡ଼ିକ କେତୋଟି ମୌଳିକ ମୂଲ୍ୟଦ୍ୱାରା ନିରୂପିତ ହୋଇଥାଏ । କେବଳ ମୂଲ୍ୟଗୁଡ଼ିକୁ ବହିରେ ଲେଖି ରଖିଲେ ଓ ସେଥିରେ ଉଲ୍ଲାସ ଅନୁଭବ କଲେ କାମ ସରି ଯାଏ ନାହିଁ । ମୂଲ୍ୟଗୁଡ଼ିକୁ ସତକୁ ସତ ବଞ୍ଚିବାକୁ ହୁଏ । ବ୍ୟକ୍ତିଗତ ଜୀବନରେ ବଞ୍ଚିବାକୁ ହୁଏ ଓ ତେଣୁ ଆମର ସାମୂହିକ ଜୀବନରେ ମଧ୍ୟ ତାହାର ଅନ୍ତଃପ୍ରାଣଟି ଉକୁଟି ଉକୁଟି ପାଉଥାଏ, ଯିଏ ଏହି ସଂସ୍କୃତି ପ୍ରେରିତ ଜୀବନଟିକୁ ପ୍ରକୃତରେ ବଞ୍ଚାଏ, ତାର ଆଖିରେ, ବ୍ୟକ୍ତିଗତ ଏବଂ ସାମୂହିକ ଏହି ଦୁଇ ପ୍ରସ୍ଥ ଭିତରେ ଆଦୌ ଖୁବ୍ ବେଶୀ ବ୍ୟବଧାନ ରହେନାହିଁ । ସମୂହ ଭିତରେ ସେ ନିଜକୁ ବଞ୍ଚାଏ ଓ ନିଜ ଭିତରେ ସମୂହକୁ ବଞ୍ଚାଏ ।

ଏହିପରି କେତୋଟି ଅର୍ଥବ୍ୟଞ୍ଜନାରେ ଭୂମି ଉପରେ ଆମେ ଆମ ଭୂମି ଭାରତବର୍ଷକୁ ମୂଲ୍ୟାୟନ କରି ଦେଖିବାଲାଗି ଚେଷ୍ଟା କରିବା । ଏବଂ, ସେହି ସମଗ୍ରତାର ଦର୍ପଣଟି ଉପରେ ଓଡ଼ିଶାକୁ ମଧ୍ୟ ଠାବ କରିବା । ଏହି ଭାରତବର୍ଷ ପ୍ରକୃତରେ କ'ଣ ? ଏହା କ'ଣ କେବଳ ଏକ ଭୌଗଳିକ ଭୂଖଣ୍ଡ ? ଆକସ୍ମିକ ଭାବରେ ଅମେ ଯେଉଁମାନେ ଏହି ଭୂଖଣ୍ଡଟିରେ ଜନ୍ମଗ୍ରହଣ କରିଛୁ, ଏବଂ ପ୍ରଧାନତଃ ସେହି କାରଣରୁ ଏହାକୁ ନିଜର ଭୂମି ବୋଲି କହୁଛୁ, କେବଳ ଏକ ମମତ୍ୱ ବ୍ୟତୀତ କ'ଣ ଆମର ଏଇଟି ସହିତ ଆଉ କୌଣସି ସମ୍ବନ୍ଧ ନାହିଁ ? କୁହାଯାଇଥାଏ, ଭାରତବର୍ଷରେ ଅନେକ ଧର୍ମ ଅନେକ ଭାଷା, ଅନେକ ରୀତି ଓ ଅନେକ ଜାତି, ତେବେ ଭାରତବର୍ଷ କ'ଣ କେବଳ ଏହିସବୁ ଯାବତୀୟ ଧର୍ମ, ଭାଷା, ରୀତି ଓ ଜାତିର ଏକ ସମଷ୍ଟିମାତ୍ର ? ଏକ ସମଗ୍ର ଯେ ସେଥିରେ ରହିଥିବା ଖଣ୍ଡସ୍ୱରୂପ ଗୁଡ଼ିକର କେବଳ ଏକ ସମାହାର ବା ସମଷ୍ଟିଠାରୁ

ଅନେକ ଅଧିକ, ଆଧୁନିକ ବିଜ୍ଞାନ ସେହି କଥାଟିକୁ ପ୍ରତିପାଦିତ କରି ସାରିଲାଣି । ଆମ ଭାରତବର୍ଷରେ ଏହି ଅଧିକ ଜନଷଟି କ'ଣ ପୃଥିବୀର ଅନ୍ୟାନ୍ୟ କେତେସବୁ ଦେଶ ଓ ଭୂଖଣ୍ଡରେ ମଧ୍ୟ ଏକାଧିକ ଭାଷା ରହିଛି, ଏକାଧିକ ଧର୍ମ ଓ ଏକାଧିକ ଚଳଣି ତଥା ଶୈଳୀ ରହିଛି । ସେହି ଦେଶଗୁଡ଼ିକଠାରୁ ଭାରତବର୍ଷରେ ଘଟିଥିବା ସନ୍ତୁଳନ ବା ସ୍ୱାଙ୍ଗୀକରଣ ମଧ୍ୟରେ ଆମ ସାମୂହିକ ପ୍ରାଣର ସ୍ତରରେ ପ୍ରକୃତରେ କେଉଁସବୁ ପାର୍ଥକ୍ୟ ବା ସ୍ୱାତନ୍ତ୍ର୍ୟ ରହିଛି, ଯାହାସକାଶେ କି ଆମେ ଏହି ଦେଶକୁ ଏକ ସ୍ୱତନ୍ତ୍ର ଭୂମିରୂପେ ଚହ୍ନିବା ଏବଂ ସେହି ଅନୁସାରେ ଏହି ଦେଶରେ ବାସ କରୁଥିବା ଜଣେ ଜଣେ ମନୁଷ୍ୟ ହିସାବରେ ଆପଣାର ବିଶେଷ ଆହ୍ୱାନଗୁଡ଼ିକୁ ଅନୁଭବ କରି ପାରିବା ?

ଭାରତବର୍ଷରେ ସର୍ବପ୍ରଥମେ କେଉଁମାନେ ବାସ କରୁଥିଲେ ? ଏହି ଭୂମିକୁ ଏକ ପରବର୍ତ୍ତୀ ପର୍ଯ୍ୟାୟରେ ଯେଉଁମାନେ ଆସିଲେ ସେମାନଙ୍କୁ ଯେଉଁମାନେ ଏକ ସାମୂହିକ ଅଭିଧା ଦେଇ ଆର୍ଯ୍ୟ ବୋଲି କହନ୍ତି, ସେହିମାନେ ହିଁ ପ୍ରାକ୍-ଆର୍ଯ୍ୟ ପ୍ରାୟ ସମସ୍ତଙ୍କୁ ଗୋଟିଏ ଫଳରେ ଭର୍ତ୍ତି କରିଦେଇ ଅନାର୍ଯ୍ୟ ବୋଲି କହନ୍ତି । ଅନାର୍ଯ୍ୟ ଶବ୍ଦର ଯଥାର୍ଥ ଅର୍ଥ ହେଉଛି ଆର୍ଯ୍ୟେତର । ସେମାନଙ୍କ ମଧ୍ୟରେ ଅଷ୍ଟ୍ରିକ୍ ଅଛନ୍ତି, ଦ୍ରାବିଡ଼ ମଧ୍ୟ ଅଛନ୍ତି । ଆର୍ଯ୍ୟମାନେ ପ୍ରୟୋଜନତଃ ଚାରଣଭୂମି ଖୋଜି ଭାରତକୁ ଆସିଥିଲେ, ସେମାନେ ଯେ ସମସ୍ତେ ଏକ ସମୟରେ ଏହି ଭୂମିରେ ପ୍ରବେଶ କରିଥିଲେ ସେ କଥା ମୋଟେ ନୁହେଁ । ଯାଯାବରମାନେ ସାଧାରଣତଃ ଯେପରି ଆସନ୍ତି, ସେମାନେ ସେହିପରି ଦଳ ଦଳ ହୋଇ ଏଠାକୁ ଆସିଥିଲେ । ଯାଯାବରମାନେ ଗୋପାଳକ ହୋଇପାରିବେ ସତ, ମାତ୍ର କଦାପି କୃଷକ ହୋଇ ପାରିବେନାହିଁ । ଆର୍ଯ୍ୟମାନେ ଭାରତବର୍ଷରେ ପ୍ରବେଶକଲା ସମୟକୁ ଏଠାରେ ନଗର ଥିଲା, କୃଷିକ୍ଷେତ୍ର ଥିଲା । ଅର୍ଥାତ୍ ଏକ ନାଗରିକ ବୃତ୍ତି ଥିଲା, ଏକ କୃଷିସଂସ୍କୃତି ମଧ୍ୟ ରହିଥିଲା । ଏଗୁଡ଼ିକ ଆଦୌ ସ୍ୱଳ୍ପାୟୁ ନଥିଲା । ମହେଞ୍ଜୋ-ଦାରୋ ଏବଂ ହରପ୍ପାରେ ଏକଦା ଖୋଦିତ ହୋଇ ଯେଉଁ ସଭ୍ୟତା ଇତିହାସକାର ମାନଙ୍କର ଦୃଷ୍ଟିଗୋଚର ହେଲା, ତାହା ଯେ ଆଦୌ ସେହି କେତୋଟି ସ୍ଥାନରେ ସୀମିତ ରହିନଥିଲା, ଉତ୍ତର ଓ ପଶ୍ଚିମ ଭାରତରେ ପରେ କରାଯାଇଥିବା ଖନନ ଏବଂ ଆବିଷ୍କାର ଫଳରେ ତାହାର ପୁଷ୍ଟୀକରଣ ହୋଇଛି । ଦ୍ରାବିଡ଼ପୂର୍ବ ଅଷ୍ଟ୍ରିକ୍‌ମାନଙ୍କର ମଧ୍ୟ ଏକ ସୁପରିଚିତ ସଭ୍ୟତା ରହିଥିଲା । ବହିରାଗମଣକାରୀ ଆର୍ଯ୍ୟମାନେ ଯୁଦ୍ଧରେ ଜୟଲାଭ କରି ସେମାନଙ୍କୁ ଅଣଉର୍ବର ଅଞ୍ଚଳମାନଙ୍କୁ ତଡ଼ିଦେଲେ ଓ ତାପରେ ଯାଇ ସେମାନଙ୍କୁ ଆଟବିକ ବୋଲି

କୁହାଗଲା ସତ, ମାତ୍ର ସେମାଙ୍କର ମୂଳ ସଭ୍ୟତାଟିକୁ କଦାପି ଆଟବିକ ବୋଲି କୁହାଯାଇ ପାରିବନାହିଁ ।

ଇତିହାସ ମଧ୍ୟରୁ ସୂତ୍ର ବାହାର କରୁଥିବା ଗବେଷକମାନେ କହନ୍ତି ଯେ, ଆର୍ଯ୍ୟମାନଙ୍କର ସର୍ବପ୍ରାଚୀନ ଋକ୍‌ବେଦରେ ମଧ୍ୟ ଏପରି କେତେକ ଶବ୍ଦ ରହିଛି, ଯାହାର ମୂଳଟିକୁ ଦ୍ରାବିଡ଼ ବୋଲି କୁହାଯାଇ ପାରିବ । ଏହିସବୁ ଶବ୍ଦ ଖ୍ରୀଷ୍ଟପୂର୍ବ ଏକ ହଜାରରୁ ପାଞ୍ଚଶହ ଅବ୍ଦ ମଧ୍ୟରେ ସଂସ୍କୃତ ମଧ୍ୟରେ ଆସି ପ୍ରବେଶ କରିଛି ବୋଲି ସେମାନେ ମତ ଦିଅନ୍ତି । ଏଥିରୁ ଅତ୍ୟନ୍ତ ଦୃଢ଼ ଭାବରେ ଅନୁମାନ କରିଯାଉଛି, ସାଧାରଣତଃ ଉତ୍ତର ଭାରତରେ ଓ ବିଶେଷତଃ ଗାଙ୍ଗେୟ ଉପତ୍ୟକାରେ ଏକଦା ଦ୍ରାବିଡ଼ ଭାଷା କଥିତ ହେଉଥିଲା । ତେଣୁ ଆର୍ଯ୍ୟମାନେ ଯେ ଭାରତୀୟ ଭୂମିରେ ଭାରତୀୟ ସଂସ୍କୃତିର ବିକାଶ କରାଇଥିଲେ, ସେକଥା ମୋଟେ ନୁହେଁ । ଆର୍ଯ୍ୟମାନେ ଏହି ଭୂମିରୁ ସେମାନଙ୍କର ପୂର୍ବଗାମୀ ମାନଙ୍କଠାରୁ ବହୁତ କିଛି ଗ୍ରହଣ କରିଥିଲେ । ଆପଣାକୁ ଏକ ସ୍ୱାଭିମାନର ବଶବର୍ତ୍ତୀ ହୋଇ ଉଚ୍ଚତର ଓ ଶୁଦ୍ଧତର ବୋଲି ଦେଖାଇବାର ଏକ ପ୍ରଚେଷ୍ଟା ସେମାନଙ୍କ ମଧ୍ୟରୁ କେତେକ ବ୍ୟକ୍ତି କରିଥିଲେ ଓ ସେହି କାରଣରୁ ହିଁ ମ୍ଳେଚ୍ଛ, ବ୍ରାତ୍ୟ ଓ ଯବନ ପ୍ରଭୃତି ନିନ୍ଦାସୂଚକ ଶବ୍ଦର ଉଦ୍‌ଭାବନ ହୋଇଥିଲା ସତ, ମାତ୍ର ସେମାନଙ୍କ ଠାରୁ ଆର୍ଯ୍ୟମାନେ ବହୁତ କିଛି ଗ୍ରହଣ କରିଥିଲେ । ହିନ୍ଦୁଧର୍ମରେ ବର୍ତ୍ତମାନ ଯେଉଁ କେତେ ଦେବାଦେବୀ ମାନଙ୍କର କଳ୍ପନା ରହିଛି, ସେଗୁଡ଼ିକ ସେମାନେ ଭାରତବର୍ଷରେ ପ୍ରବେଶ କରିବା ପୂର୍ବରୁ ସେମାନଙ୍କ ଚଳଣିରେ ମୋଟେ ନଥିଲା । ଅଧିକ ନିର୍ଭୁଲ ଭାବରେ କହିଲେ ଆର୍ଯ୍ୟ, ଦ୍ରାବିଡ ଓ ଅଷ୍ଟ୍ରିକ୍‌-ଏହି ତିନି ସଂସ୍କୃତି ଓ ଜୀବନ ଦୃଷ୍ଟିର ଏକ ପାରସ୍ପରିକ ଆଦାନ ପ୍ରଦାନ ଘଟି ହିଁ ଭାରତୀୟ ସଂସ୍କୃତିର ସେହି ପ୍ରଥମ ମୂଳଦୁଆଟି ତିଆରି ହୋଇଥିଲା ।

ଆର୍ଯ୍ୟମାନେ ଭାରତକୁ ଆସିବା ପୂର୍ବରୁ ଯାଯାବର ଥିଲେ, ତେଣୁ ସମାନେ କୃଷିସଂସ୍କୃତି ସହିତ ପରିଚିତ ନଥିଲେ । ବେଦଗ୍ରନ୍ଥ ମାନଙ୍କରେ ଆମେ ବର୍ତ୍ତମାନ ଯେଉଁସବୁ କୃଷିବାଚକ ଶବ୍ଦ ଦେଖିବାକୁ ପାଇବା, ସେଗୁଡ଼ିକ ପ୍ରଧାନତଃ ଦ୍ରାବିଡ଼ ଓ ଅଷ୍ଟ୍ରିକ୍ ବା ମୁଣ୍ଡା ଭାଷାରୁ ଆମଦାନୀ ହୋଇ ସଂସ୍କୃତ ଭିତରକୁ ଆସିଛି । ଏଠାରେ ଉଦାହରଣ ସ୍ୱରୂପ ଲଙ୍ଗଳ, କୁଦ୍ଦାଳ, ଖନ୍ଦି, ଶର୍ପ, ଉଲୁଖଳ ଶବ୍ଦଗୁଡ଼ିକର ବିଚାର କରି ଯାଇପାରେ । ଏପରିକି ଯେଉଁ "ପଲ୍ଲୀ" ଶବ୍ଦଟି

ସବୁଠାରୁ ଅଧିକ ନିଃସନ୍ଦେହ ଭାବରେ ଏକ ଗ୍ରାମୀଣ ଅର୍ଥାତ କୃଷିମୂଳ ସଂସ୍କୃତିର ସୂଚନା ଆଣି ଦେଇଥାଏ, ସେଇଟି ମଧ୍ୟ ଗୋଟିଏ ଅନସ୍ୱୀକାର୍ଯ୍ୟତର ଶବ୍ଦ । ଏହାଦ୍ୱାରା ଏକଥା ଆଦୌ କହିବାକୁ ଚେଷ୍ଟା କରାଯାଉନାହିଁ ଯେ, ଭାରତବର୍ଷ ଆର୍ଯ୍ୟଙ୍କର ନୁହେଁ, ଏହା ହେଉଛି ଅନାର୍ଯ୍ୟଙ୍କର ଅଥବା ଦ୍ରାବିଡ଼ମାନଙ୍କର । ପ୍ରକୃତ କଥା ହେଉଛି, ଏହି ଭିନ୍ନୋଟିଯାକ ଧାରା ଏକାଠି ମିଶି ଭାରତବର୍ଷରୂପୀ ବୃହତ୍ ଧାରାଟିକୁ ସମ୍ଭବ କରିଛି । ଧାରାଗୁଡ଼ିକ ମଧ୍ୟରେ କେତେକେତେ ସଂଘର୍ଷ ଓ ସ୍ପର୍ଶକାତରତା ଏଠାରେ ଏକ ସହଜ ଆଦାନ ପ୍ରଦାନ ତଥା ସମନ୍ୱୟକୁ ବ୍ୟାହତ କରିବାକୁ ବସିଛି, ତଥାପି ସବାଶେଷରେ ଆଦାନପ୍ରଦାନର ହିଁ ବିଜୟ ହୋଇଛି, ସମନ୍ୱୟ ଲାଗି ହିଁ ଅଧିକତର ପରିମାଣରେ ଏକ ମୂଳଦୁଆ ସୃଷ୍ଟି ହୋଇ ରହିଛି ।

ଭାରତବର୍ଷ ମଧ୍ୟକୁ ଆର୍ଯ୍ୟମାନଙ୍କ ପରେ ମଙ୍ଗୋଲ ଆସିଛନ୍ତି, ମୁସଲମାନ ଆସିଛନ୍ତି, ଇଉରୋପୀୟମାନେ ମଧ୍ୟ ଆସିଛନ୍ତି । ଆର୍ଯ୍ୟ ବ୍ରାହ୍ମଣ୍ୟ କର୍ମକାଣ୍ଡମୟ ବାହ୍ୟତା ଏବଂ ସମାଜିକ ଜାତିଭେଦ ବିରୁଦ୍ଧରେ ସ୍ୱର-ଉତ୍ତୋଳନ କରି ତାହା ମୂଳରୁ ଏକଦା ବୌଦ୍ଧଧର୍ମର ମଧ୍ୟ ଉଦୟ ହୋଇଛି । କେତେକ କାରଣରୁ ପ୍ରତିବାଦୀ ବୌଦ୍ଧଧର୍ମ ରାଜନବରର ଧର୍ମରେ ପରିଣତ ହୋଇଯାଇଛି, ଫଳରେ ତାର ଅସଲ ପ୍ରସଙ୍ଗଗୁଡ଼ିକ କ୍ରମଶଃ ଗୌଣ ହୋଇ ଯାଇଛନ୍ତି । ରାଜସଭାର ଆନ୍ନ ଧରି, ବୌଦ୍ଧଧର୍ମ ମୂଳତଃ ଯେଉଁସବୁ ଅତ୍ୟାଚାର ବିରୁଦ୍ଧରେ ପ୍ରତିବାଦ କରିବାଲାଗି ଆବିର୍ଭୂତ ହୋଇଥିଲା, ତାହା ସ୍ୱୟଂ ସେହିଗୁଡ଼ିକ ଦ୍ୱାରା ହିଁ ଅତ୍ୟନ୍ତ ଶୋଚନୀୟ ଭାବରେ ସଙ୍କ୍ରାମିତ ଓ ଗ୍ରସ୍ତ ହୋଇପଡ଼ିଛି । ଏହିପରି ଭାବରେ ଦେଖିଲେ ହିନ୍ଦୁଧର୍ମ କାଳକ୍ରମେ ବୁଦ୍ଧପ୍ରଚାରିତ ଧର୍ମମାର୍ଗକୁ ଗ୍ରାସ କରି ପକାଇଛି ସତ, ମାତ୍ର ସେହି ମାର୍ଗଟି ଦ୍ୱାରା ତାହା ନିଜେ ବହୁପ୍ରକାରେ ପ୍ରଭାବିତ ହୋଇଛି । ବୌଦ୍ଧଧର୍ମ ପ୍ରେରଣାର ଅନେକ ଉପାଦାନ ପରବର୍ତ୍ତୀ ଅନେକ ଶତାବ୍ଦୀ ପର୍ଯ୍ୟନ୍ତ ହିନ୍ଦୁ ଧର୍ମପ୍ରବାହଟିକୁ ଅନୁପ୍ରେରିତ କରିଛି । ଭାରତୀୟ ସନ୍ଥ ପରମ୍ପରାକୁ ତାହାର ବହୁମୂଲ୍ୟ ଅବଦାନ ଗୁଡ଼ିକୁ କେହି କଦାପି ଅସ୍ୱୀକାର କରି ପାରିବେନାହିଁ । ଇତିହାସର ଅନୁଧ୍ୟାନକାରୀ ମାନଙ୍କ ଲାଗି ବୌଦ୍ଧଧର୍ମ ଭାରତରୁ ବିତାଡ଼ିତ ହୋଇଛି ସତ, ମାତ୍ର ତାହାର ଅସଲ ବିଚରଣ-ଭୂମି କହିଲେ ତଥାପି ଏବେ ମଧ୍ୟ ସମସ୍ତେ ଭାରତବର୍ଷକୁ ହିଁ ଦେଖାଇ ଦେଉଛନ୍ତି ।

ମୁସଲମାନମାନେ ପ୍ରଥମେ ଏହି ଦେଶକୁ ବହିରାକ୍ରମଣକାରୀ ହିସାବରେ

ଆସିଥିଲେ । ସେମାନେ ଏହି ଦେଶର ଅନେକାଂଶକୁ ଜୟ କଲେ ଓ ଏଠାରେ ଦୀର୍ଘ କାଳଲାଗି ସାମ୍ରାଜ୍ୟ ମାନଙ୍କର ମଧ୍ୟ ପ୍ରତିଷ୍ଠା କଲେ । ମାତ୍ର ସେମାନେ କାଳକ୍ରମେ ଏହି ଭୂମିରେ ହିଁ ରହିଗଲେ । ଭାରତୀୟ ସ୍ଥାପତ୍ୟ ଭାରତୀୟ ସଙ୍ଗୀତ ଭାରତୀୟ ଦର୍ଶନ ଓ ଏପରିକି ଭାରତୀୟ ଜୀବନଦୃଷ୍ଟିକୁ ମଧ୍ୟ ସେମାନେ ପ୍ରଭାବିତ କଲେ, ଏହି ଘରଟିରେ କେତେ ନୂଆ ଝରକାମାନ ଫିଟାଇଲେ । ପାରସୀ ଓ ସଂସ୍କୃତ -ଏହି ଦୁଇଭାଷାର ସମ୍ମିଶ୍ରଣରେ ଉର୍ଦ୍ଦୁ ଭାଷାର ଉଦ୍ଭବ ହେଲା ଓ ତାହାରି ମାଧ୍ୟମରେ ଭାରତୀୟ ସାହିତ୍ୟରେ କେତେ ନୂତନ ଆଙ୍ଗିକର ବି ଜନ୍ମ ହୋଇପାରିଲା । ମୁସଲମାନ ରାଜତ୍ୱ ସମୟରେ ହିଁ ଭାରତୀୟ ପ୍ରାଚୀନ ଏକାଧିକ ଅଧ୍ୟାତ୍ମଶାସ୍ତ୍ରର ତର୍ଜମା କରାଗଲା ଓ ଏହିପରି ଭାବରେ ତାହା ବିଶ୍ୱବ୍ୟାପି ହେଲା, ବିଶ୍ୱ ସାହିତ୍ୟରେ ପରିଣତ ହେଲା । ଏକଦା ଯେଉଁରେ ବୌଦ୍ଧଧର୍ମ ସମ୍ରାଟ ଅଶୋକଙ୍କୁ ଜନ୍ମ ଦେଇଥିଲା, ଭାରତବର୍ଷର ସେହି ସନାତନ ଘରଟିରେ ମୁସଲମାନୀ ସଂସ୍ରବ ବାହା ଫିରୋଜ୍ ତୋଗଲକ ସମ୍ଭବ ହେଲେ, ସମ୍ରାଟ ଆକବର ସମ୍ଭବ ହେଲେ, ଦାରା ଶିକୋହ୍ ମଧ୍ୟ ସମ୍ଭବ ହେଲେ । ହୁଏତ ଏକ ଅତ୍ୟନ୍ତ ଯୁକ୍ତି ଯୁକ୍ତ ସ୍ୱାଭିମାନ ସହିତ ଏଭଳି କୁହାଯାଇ ପାରିବ ଯେ କେବଳ ଭାରତବର୍ଷରେ ହିଁ ସମ୍ଭବ ହୋଇ ପାରିଲା ।

ଇଉରୋପୀୟମାନେ ମଧ୍ୟ ପ୍ରଥମେ ଭାରତବର୍ଷକୁ ବାଣିଜ୍ୟ କରି ଆସିଥିଲେ । ମୂଳତଃ ବଣିକ କରି ଆସିଥିବା ମାର୍କୋ ପୋଲଙ୍କୁ ଚୀନ ଦେଶ ଯେପରି ଅନ୍ୟାନ୍ୟ ନାନାଭାବରେ ଆକୃଷ୍ଟ ଓ ପ୍ରଭାବିତ କରିଥିଲା ଠିକ୍ ସେହିପରି ଭାବରେ ଇଉରୋପୀୟମାନେ ଭାରତବର୍ଷକୁ କେବଳ ସୁବର୍ଣ୍ଣର ଅନୁସନ୍ଧାନରେ ଆସିଥିଲେ ମଧ୍ୟ ସବୁକାଳ ସକାଶେ ଖାଲି ସେତିକି ଭିତରେ ମୋଟେ ସୀମାବଦ୍ଧ ହୋଇ ରହି ପାରିଲେନାହିଁ । ଇଉରୋପ ଓ ଭାରତବର୍ଷ ମଧ୍ୟରେ କେତେ ଅଭିନବ ଆଦାନ-ପ୍ରଦାନର ଦ୍ୱାର ଖୋଲିଗଲା । ବୃହତ୍ତର ପୃଥିବୀଟା ଯେ ଆମର ଯାବତୀୟ ବୁଦ୍ଧିଲି-ଲସା ଠାରୁ ଅନେକ ଅଧିକ ବଡ଼ ଏହି ସତ୍ୟଟି ଫଳରେ ଉଭୟ ଇଉରୋପ ଏବଂ ଭାରତବର୍ଷ ସେହି ସତ୍ୟଟିର ପରିଚୟ ପାଇଥିଲେ ଓ ତାହାକୁ ଅଙ୍ଗେ ନିଭାଇବାକୁ ବାଧ୍ୟ ହୋଇଥିଲେ । କେବଳ ଇଉରୋପ ଓ ଭାରତବର୍ଷ ନିମନ୍ତେ ନୁହେଁ ସମଗ୍ର ବିଶ୍ୱପୃଥିବୀ ନିମନ୍ତେ ମଧ୍ୟ ସେହି ସଂସ୍ରବ ଯେ କେତେ ଉଦୟନର କାରଣ ହୋଇଛି ଭାରତବର୍ଷ ରାଜନୈତିକ ସ୍ୱାଧୀନତା ଲାଭ କରି ସାରିବାପରେ ଯାଇ ସମ୍ପୂର୍ଣ୍ଣ

ଆମେ ସମସ୍ତେ ତାହାର ମର୍ମୋପଲବ୍ଧି କରିବାକୁ ସମର୍ଥ ହେଲୁ ।

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଜନ୍ମଗ୍ରହଣ କରିଥିବା ଭାରତବର୍ଷର ତିନି ବରପୁତ୍ର,--ରବୀନ୍ଦ୍ରନାଥ, ମହାତ୍ମା ଗାନ୍ଧୀ ଓ ଶ୍ରୀ ଅରବିନ୍ଦ—ଏମାନଙ୍କୁ ଆମେ ଭାରତବର୍ଷ ଏବଂ ଇଉରୋପ ମଧ୍ୟରେ ଘଟିଥିବା ସେହି ବହୁସମ୍ଭାବନାମୟ ସମ୍ପର୍କର ତିନୋଟି ସର୍ବୋତ୍ତମ ଫଳ ବୋଲି କହିପାରିବା । ଭାରତୀୟ ତଥା ଇଉରୋପୀୟ ସଂସ୍କୃତିର ଏକ ଗୁଣାତ୍ମକ ମୂଲ୍ୟାୟନ କରିବାର ଭୂମିଉପରେ ଏହି କଥାଟିକୁ ଅନ୍ୟୋ କୌଣସି ବିବାଦର ଅବତାରଣା ନକରି ଅବଶ୍ୟ କୁହାଯାଇ ପାରିବ ଯେ, ଉଭୟ ସଂସ୍କୃତି ମଧ୍ୟରେ ଯାହାକିଛି ସ୍ଥାୟୀ ଆକୃତି ଏବଂ ଆହ୍ୱାନମାନ ରହିଛି, ରବୀନ୍ଦ୍ରନାଥ, ଗାନ୍ଧୀ ଓ ଶ୍ରୀ ଅରବିନ୍ଦ ନିଜର ଜୀବନ ତଥା ସନ୍ଦେଶ ମଧ୍ୟରେ ଅତ୍ୟନ୍ତ ମୂର୍ତ୍ତ ଭାବରେ ତାହାର ପ୍ରତିନିଧିତ୍ୱ କରି ଯାଇଛନ୍ତି ! ରବୀନ୍ଦ୍ରନାଥ କ'ଣ କେବଳ କବି ଥିଲେ, ଗାନ୍ଧୀ କ'ଣ କେବଳ ଏକ ରାଜନୈତିକ ସଂଗ୍ରାମରେ ନେତୃତ୍ୱ ଦେବାକୁ ଆସିଥିଲେ ବା ଶ୍ରୀ ଅରବିନ୍ଦ କେବଳ ତଥାକଥିତ ଅଧ୍ୟାତ୍ମବାଦୀ ମାନଙ୍କର ଏକ ଅଲଗା ସମ୍ପ୍ରଦାୟ ଗଢ଼ିବାକୁ ଆସିଥିଲେ ? ଅନେକ ଏକଦର୍ଶୀ ଅଥବା ଅଳ୍ପଗ୍ରାହୀ ସମୀକ୍ଷକ ସେମାନଙ୍କୁ କେବଳ ଏତିକି ବୋଲି କହିଲାଇ ଦେବାରେ ହୁଏତ କେତେ ପ୍ରସନ୍ନତା ଅନୁଭବ କରିଥାନ୍ତି, ମାତ୍ର ସେମାନେ ସେତିକିଠାରୁ ଅନେକ ଅଧିକ ଥିଲେ । ସେମାନେ ଅନ୍ନଠାରୁ ଆନନ୍ଦ ପର୍ଯ୍ୟନ୍ତ ପ୍ରଲମ୍ବିତ ହୋଇ ରହିଥିବା ଏକ ବୃହତ୍ତର ଜୀବନର ସନ୍ଦେଶ ବାହକ ଥିଲେ । ସେମାନେ ଏହି ଭାରତବର୍ଷରେ ଜନ୍ମଗ୍ରହଣ କରିଥିଲେ, ମାତ୍ର ଆମେ ସେଥି ଲାଗି ସେମାନଙ୍କୁ କେବଳ ଭାରତବର୍ଷର ବୋଲି କାହିଁ ପରିବା କି ? ଇଉରୋପୀୟ ସମାଜ ମୂଲ୍ୟ ଏବଂ ବାସ୍ତବମୂଳ ଜୀବନବୃଦ୍ଧି ଦ୍ୱାରା ସେମାନଙ୍କର ବିଚ୍ଛାର ଏବଂ ବାକ୍ୟଗୁଡ଼ିକ ବହୁପରିମାଣରେ ଅନୁପ୍ରେରିତ ହୋଇ ରହିଥିଲା ।

ସେମାନେ ତିନିଜଣଯାକ ଇଉରୋପୀୟ ଏକଦର୍ଶୀମାନଙ୍କର ଆଖିରେ ସତେଅବା କେବଳ ଭାରତୀୟ ପରି ଦିଶୁଥିଲେ ଓ ଏକଦର୍ଶୀ ଭାରତୀୟ ମାନଙ୍କର ଆଖିରେ କେବଳ ଇଉରୋପୀୟଙ୍କ ପରି ଦିଶୁଥିଲେ । ଏବେ ମଧ୍ୟ ସେହିପରି ଦିଶୁଛନ୍ତି । ଜର୍ମାନୀର ମହାକବି ଗୁଡ଼ଏଟ ଏକଦା ତାଙ୍କର ଗୋଟିଏ ଗ୍ରନ୍ଥରେ ଘୋଷଣା କରିକହିଥିଲେ ଯେ, ଯେଉଁ ବ୍ୟକ୍ତି ଆପଣାକୁ ତଥା ଅନ୍ୟମାନଙ୍କୁ ଯଥାର୍ଥ ଭାବରେ ଚିହ୍ନିବ, ସିଏ ଯୁଗପତ୍ ଭାବରେ ଏହି କଥାଟିକୁ ମଧ୍ୟ ଉପଲବ୍ଧି କରିପାରିବ ଯେ,

ପ୍ରାଚ୍ୟକୁ ପାଶ୍ଚାତ୍ୟଠାରୁ ଅଥବା ପାଶ୍ଚାତ୍ୟକୁ ପ୍ରାଚ୍ୟଠାରୁ ଅଲଗା କରି କଦାପି ସେହି ଦୁଇଟି ମଧ୍ୟରୁ କୌଣସିଟିକୁ କେବଳ ତାହାରି ମଧ୍ୟରେ ବଞ୍ଚି ନ ଏବଂ ସ୍ୱୟଂ ସମ୍ପୂର୍ଣ୍ଣ ଭାବରେ ବର୍ଣ୍ଣନା କରାଯାଇ ପାରିବନାହିଁ । ପ୍ରାଚ୍ୟର ହୃଦୟକୁ ଭେଦ କଲେ ଆମେ ସେଠାରେ ପାଶ୍ଚାତ୍ୟର ହୃଦୟଟିକୁ ମଧ୍ୟ ଅବଶ୍ୟ ଭେଟିବା ଏବଂ ସେହିପରି, ପାଶ୍ଚାତ୍ୟର ହୃଦୟକୁ ଭେଦ କଲେ ଆମେ ସେଠାରେ ପ୍ରାଚ୍ୟର ହୃଦୟଟିକୁ ମଧ୍ୟ ଦେଖିବାକୁ ପାଇବା । ରବୀନ୍ଦ୍ରନାଥ, ଗାନ୍ଧୀ ଓ ଶ୍ରୀ ଅରବିନ୍ଦଙ୍କର ଦୃଷ୍ଟିଗୁଡ଼ିକ ସେହି ହୃଦୟ ଭିତରକୁ ପ୍ରବେଶ କରି ପାରିଥିଲା ଏବଂ ତେଣୁ, ବାହାରୁ ସେମାନଙ୍କର ଦୃଷ୍ଟିଗତ ଅଙ୍ଗବସ୍ତ୍ର ଗୁଡ଼ିକର ସଜ୍ଜା ନିରୂପଣ କଲା ବେଳକୁ ସେମାନଙ୍କର ବିବରେ ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ଉଭୟେ ସତେଅବା ଅଭେଦ ଭାବରେ ଗୁନ୍ଥାଇ ହୋଇ ରହିଥିବା ପରି ବୋଧ ହେଉଥିଲା ।

ଅର୍ଥାତ୍, ଏଇଟାକୁ ନେଇ ସେଇଟା ସହିତ ମିଶାଇଦେଲେ ଅଥବା, ଏଥିରୁ କେତେ ସରି ଓ ସେଥିରୁ କେତେ ସରିକୁ ଏକାଠି କରି ଗୋଟିଏ ନୂଆ କେସ କରି ବିଶ୍ୱାସ୍ୟ କିଛୁ ଦେଖାଇଦେଲେ ଏତଦ୍ୱାରା କଦାପି ଯଥାର୍ଥ ସମନ୍ୱୟର ବିଧାନ ହୁଏନାହିଁ । ହୃଦୟ ଭେଦ କଲେ ଯାଇ ଅସଲ ସମନ୍ୱୟ ହୋଇଥାଏ । ଅଧ୍ୟାସମାନଙ୍କୁ ଭେଦିଲେ ଯାଇ ଅଧ୍ୟାତ୍ମର ପରିଚୟ ମିଳେ । ସମ୍ଭବତଃ ଏହାକୁ ହିଁ ଭାରତୀୟ ସଂସ୍କୃତିର ଯୁଗ ଯୁଗ ଧରି ନିର୍ମିତ ହୋଇ ଆସିଥିବା ଏକ ବିଶ୍ୱ-ସଂସ୍କୃତିକ ଏକ ସର୍ବୋତ୍ତମ ଅବଦାନ ବୋଲି କୁହାଯାଇ ପାରିବ । ଭାରତବର୍ଷୀୟର ଆଉଜଣେ ଅନ୍ୟତମ ଅନୁରାଗୀ ସମୀକ୍ଷକ ଶ୍ରୀଯୁକ୍ତ ଆନନ୍ଦ କୁମାରସ୍ୱାମୀ ଆମକୁ ବାରମ୍ବାର ସେହି ସତ୍ୟଟି ସମ୍ବନ୍ଧରେ ସତର୍କ ଏବଂ ସଚେତନ କରାଇ ଦେଇଛନ୍ତି । ଆମକୁ ଏକ ସ୍ଥାନ ଅଥବା ଅଭିଧାର ନିର୍ଦ୍ଦିଷ୍ଟ ବା ତାତ୍କାଳିକ ପରିଚୟଟିଏ ଦେଇ ଯାହା ଆମକୁ ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର କରି ଦେଖାଇ ଦେଉଛି, ନିଜର ମୂଲ୍ୟସନ୍ତକ ଗୁଡ଼ିକୁ କେବଳ ତାହାରି ଭିତରେ ସୀମାବଦ୍ଧ କରି ରଖି, ଦମ୍ଭ ଦେଖାଉଥିବା ପର୍ଯ୍ୟନ୍ତ ଆମେ କଦାପି କୌଣସି ସଂସ୍କୃତିର ଯଥାର୍ଥ ବାହକ ହୋଇ ପାରିବାନାହିଁ । ଆମର ଭାରତୀୟତା ଯଦି ଆମର ନାନା ଅନ୍ୟ ଅଳ୍ପତା ଓ ତଜ୍ଜନିତ ଉତ୍ତେଜନାଗୁଡ଼ାକ ଦ୍ୱାରା ପ୍ରକୁପିତ ଓ ମୁଗ୍ଧ ହୋଇ ଆପଣାକୁ ତଥାକଥିତ ଭାରତୀୟତାର କେତେଟା ଅହଙ୍କାରୀ ବାଡ଼ ଭିତରେ ଆବଦ୍ଧ କରି ରଖିଦେବାର ଷଡ଼ଯନ୍ତ୍ର କରୁଥାଏ, ତେବେ ଆମକୁ କୌଣସି ସୁସ୍ଥ ଏବଂ ସଙ୍ଗତ ଯୁକ୍ତ ଅର୍ଥରେ କଦାପି ଭାରତୀୟ ବୋଲି କୁହା ଯିବନାହିଁ । ଶ୍ରୀ କୁମାରସ୍ୱାମୀ ଆମକୁ ବାରବାର

ସେହି କଥାଟିକୁ କହିଛନ୍ତି । ଭାରତୀୟ ସଂସ୍କୃତି ଭାରତୀୟ ବୋଲି ଯେ ତାହାକୁ ସଂସ୍କୃତି ବୋଲି ବୁଝାଯିବ, ସେକଥା ମୋଟେ ନୁହେଁ, ମାତ୍ର ଭାରତୀୟ ସଂସ୍କୃତି ମୂଳତଃ ସଂସ୍କୃତି ବୋଲି ହିଁ ଯେ ତାହା ସଂସ୍କୃତି ପଦବାଚ୍ୟ ଅବଶ୍ୟ ହେବ,—ଏଇଟି ହେଉଛି କୁମାରସ୍ୱାମୀଙ୍କର ଉକ୍ତି । ଯାବତୀୟ ସଂସ୍କୃତି ଏଠାରେ ଘୃଣିତ କରାଇ ଦିଆ ଯାଉଥିବା ଚଳଦ୍ୱ୍ୟାର ଲାଗି ହିଁ ଧର୍ମତଃ ସହାୟକ ହୋଇ ରହି ପାରୁଥିବା ଉଚିତ ।

ପୃଥିବୀରେ ଯାହାକିଛି ରହିଛି, ଆମ ଭାରତବର୍ଷରେ ମଧ୍ୟ ତାହା ରହିଛି, ଏହା ଆମକୁ କୌଣସି ମିଛ ଗର୍ବ ଲାଗି ମୋଟେ ଉତ୍ସାହ ଦେବନାହିଁ । ତାହା ଆମକୁ ଜଣେ ଜଣେ ଭାରତୀୟ ହିସାବରେ ଏକ ବିଶେଷ ଭାବାଭିମୁଖ୍ୟର ହିଁ ଆହ୍ୱାନ ଦେଇଯିବ । ସେହି ଆହ୍ୱାନର ସମ୍ମୁଖୀନ ହୋଇପାରିଲେ ଯାଇ ଆମକୁ ନିମିତ୍ତ କରି ଭାରତୀୟ ସଂସ୍କୃତି ଅଗ୍ରସର ହୋଇପାରିବ, ଅର୍ଥାତ୍ ସମଗ୍ର ବିଶ୍ୱର ଅନେକ କାର୍ଯ୍ୟରେ ଲାଗିବ । ଯାବତୀୟ ସଂସ୍କୃତି ସେହି ସଂସ୍କୃତିକୁ ନିଜର ବୋଲି କହୁଥିବା ମଣିଷମାନଙ୍କର ହୃଦ୍‌ଗ୍ରନ୍ଥି ଗୁଡ଼ିକୁ ଛିନ୍ନ କରିବ । ସେହି ଗଣ୍ଠିଗୁଡ଼ିକ ଛିନ୍ନ ହୋଇଗଲେ ଯାଇ ସଂଶୟ ଯିବ, ନିଜ ଭିତରକୁ ତଥା ଅନ୍ୟମାନଙ୍କ ଭିତରକୁ ବାଟ ଫିଟିଯିବ । ନିଜ ଭିତରକୁ ତଥା ଅନ୍ୟମାନଙ୍କ ଭିତରକୁ ବାଟ ଫିଟିଯିବା,—ନିଜକୁ ତଥା ଅନ୍ୟମାନଙ୍କୁ ସ୍ପର୍ଶ କରି ପାରିବାର ଏହି ସାମର୍ଥ୍ୟ ଲାଭ କରିବା,-ଏବଂ ତାହାଠାରୁ ସମ୍ଭବତଃ ଆହୁରି ଅଧିକ ମହତ୍ତ୍ୱପୂର୍ଣ୍ଣ କଥା ହେଉଛି, ସାମୂହିକ ଜୀବନକୁ ଏପରି ଗୋଟିଏ ଅନୁକୂଳ ସମଗ୍ର ପରିବେଶ ରୂପେ ନିର୍ମାଣ କରି ଆଣିବା, ଯେଉଁଠାରେ କି ସମସ୍ତଙ୍କୁ ଏହି ସାମର୍ଥ୍ୟଟିକୁ ଲାଭ କରିବାର ଯଥାସମ୍ଭବ ଅଧିକ ପ୍ରଶସ୍ତ ଅବକାଶମାନ ଉପଲବ୍ଧ ହୋଇ ପାରୁଥିବ,—ସାଂସ୍କୃତିକ ମୂଲ୍ୟବୋଧ କହିଲେ ଯାବତୀୟ ସୁସ୍ଥ ସମାଜରେ ମୂଳତଃ ଏହାହିଁ ବୁଝାଇବା ଉଚିତ ।

ଭାରତବର୍ଷରେ ଅନେକ ଧର୍ମ ରହିଛି, ଅନେକ ଭାଷା ରହିଛି, ଏଠାରେ 'ସର୍ବହିତେ ରତ' ହେବାକୁ ହିଁ ଋଷିମାନଙ୍କର ମୁଖରେ ଜୀବନ ବଞ୍ଚିବାର ଅସଲ ଶ୍ରେୟଃ ବୋଲି ଘୋଷଣା କରାଯାଇଛି । ଏହିପରି ଅନେକ ଧର୍ମ, ଅନେକ ଭାଷା ଓ ଏକାଧିକ ଜୀବନଶୈଳୀ ନେଇ ପରସ୍ପରର ସହିତ ପ୍ରାୟ ଦିନ ଘଷାଘଷି ହୋଇ ରହିବାକୁ କାର୍ଯ୍ୟତଃ ବାଧ୍ୟ ହୋଇ ଆସିଥିବାରୁ ଭାରତବର୍ଷରେ ଏକ ବିଶେଷ

ପ୍ରଜ୍ଞାର ବିକାଶ ହୋଇ ଆସିଛି । ଆମେ ସେହି ପ୍ରଜ୍ଞାଟିକୁ ନିଜସ୍ୱ କରି ରଖିପାରିଲେ ଯାଇ ଭାରତୀୟ ସଂସ୍କୃତିର ଭାଜନ ହୋଇ ପାରିବା । ଭାରତୀୟ ସଂସ୍କୃତିର ଏକାଧିକ ଦୁଃସମୟରେ ଉତ୍ତେଜିତ ଅନ୍ଧଶ୍ରଦ୍ଧା ମାନଙ୍କର କୋଳାହଳରେ ସେହି ପ୍ରଜ୍ଞାଟି ସତେଅବା ଏକାବେଳେକେ ପୋଡ଼ିହୋଇ ପଡ଼ିବା ପରି ମନେ ହୋଇଛି ଏବଂ ତେଣୁ ଆମ ବଳିଷ୍ଠତାର ଅସଲ ସୂତ୍ରଟି ଆମ ହାତରୁ ସତେଅବା ଲୁପ୍ତ ହୋଇଯିବା ପରି ଲାଗିଛି । କେତେ ମନ୍ଦିର ଭଙ୍ଗାଯାଇଛି, କେତେ ବିହାର ପୋଡ଼ାଯାଇଛି, ଧର୍ମମାନେ ଜୀବନଗତ ନହୋଇ ରାଜାନୁଗତ ଅର୍ଥାତ୍ କ୍ଷମତାଶ୍ରୟୀ ହୋଇ ରହିବାଲାଗି ପ୍ରରୋଚନା ଲାଭ କରିଛନ୍ତି । ମଣିଷମାନଙ୍କୁ ନାନା ଘୃଣା ଏବଂ ଅସହିଷ୍ଣୁତାର ଅନ୍ୟ ମାନଦଣ୍ଡ ମାନଙ୍କରେ ପରସ୍ପରଠାରୁ ଅଲଗା ଅଲଗା ବୋଲି ଦେଖାଇ ବିବେକକୁ ବିଭ୍ରାନ୍ତ କରି ରଖାଯାଇଛି । ମଣିଷକୁ ମଣିଷ ସହିତ ମିଳାଇବା ଯେ ଧର୍ମ, ଭାଷା ଏବଂ ସଂସ୍କୃତିର ସର୍ବପ୍ରଧାନ କାର୍ଯ୍ୟ, ସେହି କଥାଟିକୁ କେତେ ଚତୁରତା ସହିତ ଭୁଲାଇ ଦିଆଯାଇଛି । ଧର୍ମନାମରେ ତରବାରୀ ଉତ୍ତୋଳନ କରାଯାଇଛି, ରାଜାମାନଙ୍କର ତୁଚ୍ଛ ରାଜ୍ୟଲୁଣ୍ଠନର କାର୍ଯ୍ୟରେ ଠାକୁରମାନଙ୍କୁ ଆଣି ବ୍ୟବହାର କରାଯାଇଛି । ପୃଥିବୀର ଅନ୍ୟ ଅନେକ ଧର୍ମ ଓ ଅନେକ ସଭ୍ୟତାରେ ଯେପରି ହୋଇଛି, ଭାରତବର୍ଷର ଧର୍ମ ଓ ସଭ୍ୟତାର କ୍ଷେତ୍ରରେ ମଧ୍ୟ ସେହିପରି ହୋଇଛି ।

ଭାରତର ସନ୍ଥ-ପରମ୍ପରା ସେହିସବୁ ମହାନ ବିନଷ୍ଟିର ସମୟରେ ତଥାପି ସମଗ୍ର ଦୃଷ୍ଟିଟିକୁ ଯଥାସମ୍ଭବ ଅଧିକ ଶକ୍ତିଶାଳୀ ଭାବରେ ଏକାଧିକ ସମ୍ଭାର ଧରିବାକୁ ପ୍ରୟାସ କରି ଆସିଛି । ଭାରତୀୟ ଉଦ୍‌ବୋଦ୍ଧନର ଇତିହାସରେ ଭାରତୀୟ ସନ୍ଥମାନଙ୍କର ଯେଉଁ ମହନୀୟ ଓ ଗୌରବୋଜ୍ଜ୍ୱଳ ଅବଦାନ ରହିଛି, ଆଜିମଧ୍ୟ ତାହାର ଆହୁରି ଅଧିକ ସମଗ୍ର ଓ ବହୁ ପ୍ରସ୍ତୁତ ଅଧ୍ୟୟନ ହୋଇ-ପାରିବା ଉଚିତ୍ । ଏକଥା ଅବଶ୍ୟ ସତ ଯେ ସନ୍ଥମାନେ ଯାବତୀୟ ମତସଂକୀର୍ଣ୍ଣତା ଏବଂ ସାମ୍ପ୍ରଦାୟିକତା ସମ୍ମୁଖରେ ଦୃଢ଼ ପ୍ରତିବାଦର ସ୍ୱର ଉତ୍ତୋଳନ କରିଥିଲେ ମଧ୍ୟ, ସେମାନଙ୍କ ଅନ୍ତେ ସେମାନଙ୍କର ଅନୁଗାମୀମାନେ ସେମାନଙ୍କ ନାମରେ ସଂପ୍ରଦାୟ ଗଢ଼ିଛନ୍ତି, ଏହିସବୁ ସଂପ୍ରଦାୟ ମଧ୍ୟରେ କେତେ କନ୍ଦଳ ଓ କଳହ ଲଗାଇ ଦିଆଯାଇଛି । ସନ୍ଥମାନେ କ୍ରମେ ଠାକୁର ହୋଇ ଉପେକ୍ଷିତ ହୋଇ ରହିଛନ୍ତି । ବୁଦ୍ଧବାଣୀକୁ ଏକଦା ଏକ ବୁଦ୍ଧଶରୀର ମଧ୍ୟକୁ ଧର୍ମୀୟ ଯାବତୀୟ କାମୁକତା ଓ ଆତୁରତା ସହିତ ଅବକ୍ଷୟିତ କରି ଯେପରି ଅଣା ଯାଇଥିଲା ସନ୍ଥମାନଙ୍କର ଶିଖାଧାରୀମାନେ ମଧ୍ୟ ପ୍ରାୟ ସେହିପରି ଏକ ଘଟଣାର ପୁନରାବୃତ୍ତି

କରାଇଛନ୍ତି । ତଥାପି ଭାରତୀୟ ସଂସ୍କୃତିର ରାମାନନ୍ଦଙ୍କ ଠାରୁ ଆରମ୍ଭ କରି କବୀର ନାନକ, ଦାଦୁ, ରଜ୍ଜବ ଓ ଜ୍ଞାନେଶ୍ୱରଙ୍କ ବାଟ ଦେଇ ଊନବିଂଶ ଶତାବ୍ଦୀର ଶ୍ରୀ ନାରାୟଣ ଗୁରୁଙ୍କ ପର୍ଯ୍ୟନ୍ତ ଯେଉଁ ସବଳ ଓ ଉପଯୁକ୍ତ ସନ୍ଥଜୀବନ ତଥା ସନ୍ଥସନ୍ଦେଶର ଧାରାଟି ଭାରତବର୍ଷରେ ଅବ୍ୟାହତ ରହିଛି, ଭାରତୀୟ ସଂସ୍କୃତିର କୌଣସି ଆଲୋଚନା କଦାପି ତାହାକୁ ଅସ୍ୱୀକାର କରି ଚାଲିଯାଇ ପାରିବନାହିଁ । ଏବଂ, ଭାରତୀୟ ସଂସ୍କୃତି ଓ ଜୀବନସଂହତି ଯେତେବେଳେ କୌଣସି ମୂଲ୍ୟବୋଧ ବିପର୍ଯ୍ୟୟର କବଳରେ ପଡ଼ି ଉପସ୍ଥିତ ଆହ୍ୱାନଗୁଡ଼ିକର ଜବାବ ଦେବାଲାଗି ସତେଅବା ବଳ ନପାଉଥିବା ପରି ଅନୁଭବ କରୁଥିବ, ସେତେବେଳେ ଆପଣାର ପୁନଃସଂକଳନ ଏବଂ ପୁନରାବିଷ୍କାର ଲାଗି ତାହାକୁ ବାରମ୍ବାର ଭାରତୀୟ ସନ୍ଥମାନଙ୍କ ପାଖକୁ ବାହୁଡ଼ି ଆସିବାକୁ ପଡ଼ୁଥିବ ।

ଭାରତବର୍ଷର ସାଂସ୍କୃତିକ ଆତ୍ମାଟି ଯେ ବାହ୍ୟ ପରିପ୍ରକାଶରେ ସହସ୍ର ବିଚିତ୍ରତା ସତ୍ତ୍ୱେ ତଥାପି ଏକ ହୋଇ ରହିଛି, ଏହି ଦେଶର ସନ୍ଥମାନେ ହିଁ ଆପଣାର ଦୃଷ୍ଟାନ୍ତ ଦ୍ୱାରା ତାହାର ପ୍ରମାଣ ଦେଇ ଯାଇଛନ୍ତି । ସେମାନେ ସ୍ଥାନୀୟ ବିଭିନ୍ନ ଭାଷାରେ ଗୀତ ଗାଇଛନ୍ତି ; ଭାରତୀୟ ବୃହତ୍ ପରମ୍ପରାକୁ କେତେ ସହଜ ଏବଂ ସାବଲୀଳ ନିଷ୍ଠା ଓ ପ୍ରୀତିରେ ସେମାନେ ସ୍ଥାନୀୟ କ୍ଷୁଦ୍ର ପରମ୍ପରାଗୁଡ଼ିକ ମଧ୍ୟକୁ ଉଜାଡ଼ି ଆଣିଛନ୍ତି । ଭାରତୀୟ କ୍ଷୁଦ୍ର ପରମ୍ପରାଗୁଡ଼ିକରେ ବୃହତ୍ ପରମ୍ପରାର ଅସଲ ଐକ୍ୟଟି ଯେ ସର୍ବଦା ପ୍ରାଣସ୍ୱରୂପ ହୋଇ ବର୍ତ୍ତମାନ୍ ରହିଛି ଓ ଏହି ଭୂମିର ଅସଲ ଆକାଂକ୍ଷାଗୁଡ଼ିକ ଯେ ଏକାଠି ଗ୍ରନ୍ଥି କରି ଧରିଛି, ଭାରତବର୍ଷର ସନ୍ଥମାନେ ହିଁ ତାହାକୁ ଏଠାରେ ପ୍ରତ୍ୟକ୍ଷ ଫଳରୂପେ ଆମ ଅନୁଭବଗୁଡ଼ିକର ଗଛରେ ପ୍ରକୃତରେ ଫଳାଇ ପାରିଛନ୍ତି । ପ୍ରାଚୀନରେ ଉପନିଷଦଗୁଡ଼ିକର ବାଣୀରେ ଆମେ ଅବଶ୍ୟ ସେହି ଐକ୍ୟ ଓ ସେହି ଆକାଂକ୍ଷାଟି ନିନାଦିତ ହେଉଥିବାର ଦେଖିବାକୁ ପାଇବା ମାତ୍ର ଉପନିଷଦର କାଳରେ ଭାରତବର୍ଷର ଆକାଶଟି ଅଦୌ ପରବର୍ତ୍ତୀ ଯୁଗଟି ପରି ଏତେ ବୈଚିତ୍ର୍ୟମୟ ହୋଇନଥିଲା, ତେଣୁ ଐକ୍ୟର ଆହ୍ୱାନ ମଧ୍ୟ ସେତେ ତୀବ୍ର ଭାବରେ ଅନୁଭୂତ ହୋଇନଥିଲା । ସେତେବେଳେ ଭାଷା ଅନେକ ହୋଇନଥିଲା, ଦ୍ରାବିଡ଼ ଓ ଅଷ୍ଟ୍ରିକ୍‌ମାନେ ଆର୍ଯ୍ୟମାନଙ୍କ ଠାରୁ ତଥାପି ଭାରି ଅଲଗା ହୋଇ ରହିଥିଲେ, ଯଜ୍ଞକର୍ତ୍ତା ଏବଂ ବ୍ରାହ୍ମଣମାନଙ୍କ ଭିତରେ ସ୍ତରଣାଗତ ବହୁ ବ୍ୟବଧାନ ରହିଥି-ଲା । ଭୂମିଟିକୁ ତାହାର ଯାବତୀୟ ଜଟିଳତା ସତ୍ତ୍ୱେ ତଥାପି ଗୋଟିଏ ବୋଲି ଅନୁଭବ

କରିବାର ଆବଶ୍ୟକତା ଆଦୌ ଏକ ବାସ୍ତବ ସମସ୍ୟାରୂପେ ଆସି ଉପସ୍ଥିତ ହୋଇନଥିଲା ।

ଓଡ଼ିଶାରେ ବାସ କରୁଥିବା ଆମେ ସମସ୍ତେ ଆମର ଯେଉଁ ଭୂମିଟିକୁ ଓଡ଼ିଶା ବୋଲି ଚିହ୍ନୁଛୁ, ତାହାକୁ ଆପଣାର ବୋଲି କହୁଛୁ, ସେତେବେଳେ ସେହି ଭୂମି ଅବଶ୍ୟ ଥିଲା, ମାତ୍ର ତାହାର ଏପରି ଭାବରେ କୌଣସି ନାମକରଣ ହୋଇ ନଥିଲା । ସେହି ଭୂମିରେ ମନୁଷ୍ୟ ଅବଶ୍ୟ ଥିଲେ,-ସେମାନଙ୍କର ଭାଷା ଥିଲା, ଏକ ସାଂସ୍କୃତିକ ଆକାଶବାଡ଼ ଭିତରେ ସେମାନଙ୍କର ଜୀବନଚଳଣିର ପ୍ରରୂପ ଗୁଡ଼ିକ ଅବଶ୍ୟ ଏକ ସ୍ଥାନୀୟ ଓ ବିଶେଷ ମୋଡ଼ ଓ ଭଙ୍ଗୀରେ ଅଭିବ୍ୟକ୍ତ ହେବାରେ ଲାଗିଥିଲା । ମାତ୍ର ସେମାନଙ୍କୁ ଆମେ କ'ଣ ତଥାପି ଓଡ଼ିଆ ବୋଲି ଏକ ସଂଜ୍ଞା ଦେଇ ଚିହ୍ନିପାରିବା ? ଏହି ଭୂମିରେ ଯେତେ ମଣିଷ ବାସ କରୁଛନ୍ତି,ଏହି ସମସ୍ତଙ୍କୁ ଗୋଟିଏ ସଞ୍ଚାର ବେଢ଼ ଭିତରେ ଗୋଟିଏ ବୋଲି ଚିହ୍ନିବା,-ଏଇଟି ହେଉଛି ଏକ ବହୁପରବର୍ତ୍ତୀ ଯୁଗର ଲକ୍ଷଣ; ଆହୁରି ଅଧିକ ନିର୍ଦ୍ଦିଷ୍ଟ ଭାବରେ କହିଲେ, ଏହା ପ୍ରାୟ ସବୁପାକ ଅର୍ଥରେ ଊନବିଂଶ ଶତାବ୍ଦୀର ହିଁ ଏକ ଘଟଣା । ସପ୍ତଦଶ ଶତାବ୍ଦୀରେ ମୋଗଲମାନେ ବର୍ତ୍ତମାନ ଓଡ଼ିଶାର ଉପକୂଳାଞ୍ଚଳରୁ ଯେଉଁ ଖଣ୍ଡିଟିକୁ ଦଖଲ କରି ନେଇଥିଲେ, ସେମାନେ ଖାସ୍ ସେଇଟିକୁ ହିଁ ଓଡ଼ିଶା ବୋଲି ନାମିତ କରିଥିଲେ । ସେହି ଅଞ୍ଚଳଟିର ବାହୁବାହାରେ ମଧ୍ୟ ସେତେବେଳେ ଓଡ଼ିଆ ଭାଷା ହିଁ ଜୀବନ—ସ୍ୱରୂପରେ ସର୍ବପ୍ରଧାନ ସୂତ୍ର ହୋଇ ରହିଥିଲା । ମାତ୍ର, ସେହି ଭାଷା ଓ ତାହାଦ୍ୱାରା ଏକାଠି ଗଅଁଠା ହୋଇ ରହିଥିବା ଜୀବନଟିକୁ ଚିହ୍ନି ନାମଧରି ଡାକି ପାରିବାଭଳି ସେତେବେଳେ କୌଣସି ଓଡ଼ିଶା ନଥିଲା । ଦକ୍ଷିଣ ଭାଗରେ କଳିଙ୍ଗ ଥିଲା, ଉତ୍ତରରେ ଉତ୍କଳଙ୍ଗ ବା ଉତ୍କଳ ଥିଲା, ---ପଶ୍ଚିମ ଭାଗରେ କୋଶଳ ଥିଲା । ଏହି ରାଜ୍ୟଗୁଡ଼ିକରେ ରାଜାମାନେ ଥିଲେ । ସେମାନଙ୍କ ଭିତରେ ଯୁଦ୍ଧ ବିଗ୍ରହ ଲାଗି ରହିଥିଲା ଓ ସେଥିରେ ହେଉଥିବା ଜୟପରାଜୟ ଅନୁସାରେ ରାଜ୍ୟର ସୀମାରେ ମଧ୍ୟ କେତେ ପ୍ରକାର ମିଶାଣ ଓ ଫେଡ଼ାଣ ହେବାରେ ମଧ୍ୟ ଲାଗିଥିଲା । ବେଳେ ବେଳେ ବୃହତ୍ତର ରାଜ୍ୟଗୁଡ଼ିକ ଭାଙ୍ଗି କେତେକେତେ ଖଣ୍ଡରାଜ୍ୟରେ ବିଭକ୍ତ ହୋଇ ଯାଉଥିଲା । ଏପାଖରେ ଗୋଟିକୁ ତୋଷାଳି ବୋଲି କୁହା ଯାଉଥିଲା ଓ ସେପାଖରେ ଆଉଗୋଟିକୁ ମହାକାନ୍ତାର ବୋଲି କୁହାଯାଉଥିଲା । ବଡ଼ ରାଜ୍ୟଗୁଡ଼ିକ ଗୃହକନ୍ଦଳ ଲାଗି ଖଣ୍ଡ ଖଣ୍ଡ ହୋଇଯିବା ଫଳରେ ସ୍ଥାନୀୟ ରାଜବଂଶ ଗୁଡ଼ିକର ମଧ୍ୟ ସାମୟିକ କେତେ ଉଦ୍‌ଭବ ଘଟୁଥିଲା । ଶୈଳୋଦ୍‌ଭବ, ମାଠର, ମୁରୁଣ୍ଡ, କଦମ୍ବ ପ୍ରଭୃତି ନାମକୁ ଆମେ ସେହି ପର୍ଯ୍ୟାୟର କେତୋଟି ରୂପଭେଦ ବୋଲି ଅବଶ୍ୟ ସ୍ମରଣ

ରଖିବା । ମାତ୍ର, ଓଡ଼ିଶା ବୋଲି ଆମେ ସଚେତନ ଏବଂ ଭାବଯୁକ୍ତ ଭାବରେ ଏବେ ଯାହା ବୁଝୁଛୁ, ସେଇଟି ସେତେବେଳେ କେଉଁଠି ଥିଲା ?

ଖାରବେଳ, ଚୋଳଗଙ୍ଗଦେବ, କପିଳେନ୍ଦ୍ର ଓ ପୁରୁଷୋତ୍ତମ ପ୍ରଭୃତି ରାଜାମାନେ ସେମାନଙ୍କ ସମୟରେ ଯେଉଁସବୁ ସମର-ଅଭିଯାନରେ ବାହାରି ଥିଲେ ଏବଂ ବହୁଃସ୍ଥ ବହୁ ରାଜ୍ୟକୁ ସାମୟିକ ଭାବରେ ନିଜ ରାଜ୍ୟରେ ଆଣି ମିଶାଇଥିଲେ, ସେଗୁଡ଼ିକୁ ଆମେ ଗୋଟିଏ ଜାତିର ଗୌରବ ଓ ବିଜୟ ବୋଲି କହିଲେ ହୁଏତ ଭାରି ଭ୍ରମରେ ପଡ଼ିଯିବା । ସେତେବେଳେ ରାଜବଂଶ ରାଜବଂଶ ଭିତରେ ଯୁଦ୍ଧ ହେଉଥିଲା । ଅଧିକରୁ ଅଧିକ ରାଜ୍ୟବିଜୟ ହୁଏତ ଅଧିକରୁ ଅଧିକ ରାଜମହିମାର ଦ୍ୟୋତକ ଥିଲା । ଯେଉଁ ରାଜାମାନେ ଅଧିକ ରାଜ୍ୟ ଜୟ କରୁଥିଲେ ଓ ତେଣୁ ଧନ ଆଣି ଘରେ ଅଧିକରୁ ଅଧିକ ମନ୍ଦିର ତୋଳାଉଥିଲେ, ସେତେବେଳେ ସେମାନଙ୍କୁ ଅଧିକ ଯଶସ୍ୱୀ ବୋଲି ବୁଝାଯାଉଥିଲା । ଅଶୋକଙ୍କ ସମୟରେ ମୌର୍ଯ୍ୟ ସାମ୍ରାଜ୍ୟ ଭାରତବର୍ଷର ପଶ୍ଚିମ ସମୁଦ୍ରୋପକୂଳ ପର୍ଯ୍ୟନ୍ତ ମାଡ଼ି ଯାଇଥିଲା । ମୌର୍ଯ୍ୟବଂଶର ରାଜଧାନୀ ସେତେବେଳେ ପାଟଳିପୁତ୍ର ଥିଲା । ପାଟଳିପୁତ୍ର ବା ପାଟଣା ବର୍ତ୍ତମାନ ବିହାରର ରାଜଧାନୀ । ସେହି କାରଣରୁ ଯଦି ଏବେ ବିହାରର ଅଧିବାସୀମାନେ ମୌର୍ଯ୍ୟ ରାଜ୍ୟବିଜୟରୁ ପ୍ରେରଣା ପାଇ ଏକଦା ଗୁଜରାଟ ଓ ସୌରାଷ୍ଟ୍ର ବିହାରର ଅନ୍ତର୍ଗତ ଥିଲା ବୋଲି ପୁଲକରେ କହିବାକୁ ଆରମ୍ଭ କରନ୍ତି, ତେବେ ତାହା ପ୍ରକୃତରେ କେଡ଼େ ଅବର୍ଜିଆ ନଶୁଭିବ ? ଖାରବେଳ ବା କପିଳେନ୍ଦ୍ରଙ୍କ ସମୟରେ ସେହିପରି ରାଜ୍ୟବିଜୟ ଦ୍ୱାରା ସେମାନଙ୍କର ରାଜ୍ୟବିସ୍ତାର ଉତ୍ତରରେ ଗଙ୍ଗା ଓ ଦକ୍ଷିଣରେ ଗୋଦାବରୀକୁ ସ୍ପର୍ଶ କରିଥିଲା । ସେହି କାରଣରୁ ବର୍ତ୍ତମାନ ଓଡ଼ିଶାରେ ବାସ କରୁଥିବା ଆମେ ଏକଦା ଏହି ରାଜ୍ୟ ଅମୁକଠାରୁ ଅମୁକ ପର୍ଯ୍ୟନ୍ତ ବିସ୍ତୃତ ଥିଲା ବୋଲି କହିଲେ ତାହା ଆଧୁନିକ ବିବେକଂଗୁଡ଼ାକର କାନକୁ ପ୍ରକୃତରେ କିପରି ଶୁଭୁଥିବ ? ସେହି ନ୍ୟାୟରେ ରାଜା ପୁରୁଷୋତ୍ତମଙ୍କର କାଞ୍ଚି ଅଭିଯାନକୁ ଆମେ ଓଡ଼ିଆ ଜାତିର ଏକ ସମର ବା ଅଭିଯାନ ବୋଲି କିପରି ବା କହିପାରିବା ? ତାହାକୁ କେବଳ ଜଣେ ରାଜାଙ୍କ ଆଉଜଣେ ରାଜାଙ୍କ ବିରୁଦ୍ଧରେ ଏକ ଯୁଦ୍ଧାଭିଯାନ ବୋଲି ବୁଝାଯାଇ ପାରିବ । ଜଣେ ଇତିହାସକାରଙ୍କ ମତରେ, ଖ୍ରୀଷ୍ଟ ପଞ୍ଚଦଶ ଶତାବ୍ଦୀ ପୂର୍ବରୁ ଇଉରୋପରେ ବିଭିନ୍ନ ସମୟରେ ଯେଉଁ ଯୁଦ୍ଧ ଓ ବିଗ୍ରହମାନ ଘଟିଥିଲା, ତାହାକୁ ଗୋଟିଏ ଜାତିର ଆଉଗୋଟିଏ ଜାତି ସହିତ ଯୁଦ୍ଧ ବୋଲି ବୁଝାଯାଇ ପାରିବନାହିଁ । ସେଗୁଡ଼ିକ ହେଉଛନ୍ତି ଗୋଟିଏ ରାଜବଂଶ

ବରୁଦ୍ଧରେ ଆଉଗୋଟିଏ ରାଜବଂଶର ଯୁଦ୍ଧ । ଭାରତବର୍ଷରେ ବିକଶିତ ହୋଇଥିବା ଜାତି ତଥା ଜାତିପ୍ରଚାର ଯାବତୀୟ କଳ୍ପନା ଓ ଭାବନା ଊନବିଂଶ ଶତାବ୍ଦୀରେ ତତ୍କାଳୀନ ଇଉରୋପୀୟ ସଂସ୍ପର୍ଶ ହେତୁ ହିଁ ଏହି ଭୂମିକୁ ସଂକ୍ରମିତ ହୋଇ ଆସିଥିଲା ।

ଆମର ଏହି ଭୂମିରେ ସର୍ବପ୍ରଥମେ ଅଷ୍ଟ୍ରିକ୍‌ମାନେ ବାସ କରୁଥିଲେ । ଆମେ ପରବର୍ତ୍ତୀ ପର୍ଯ୍ୟାୟର ଆଗନ୍ତୁକମାନେ ସେମାନଙ୍କୁ ଏବେ ଆଦିବାସୀ ବୋଲି କହୁଛୁ । ବର୍ତ୍ତମାନ ଓଡ଼ିଶାର ମୋଟ ଜନସଂଖ୍ୟାର ଏମାନେ ହେଉଛନ୍ତି ପାଞ୍ଚଭାଗରୁ ଏକଭାଗ । ଏକଦା ବହିରାଗତ ଅଧିକ ସମର୍ଥମାନେ ଏମାନଙ୍କୁ ଅଟବୀ ବା ଅରଣ୍ୟ ଭିତରକୁ ତଡ଼ ଦେଇଥିଲେ । ହୁଏତ ସେହି କାଳରୁ ହିଁ ସେମାନେ ସେହି ଅରଣ୍ୟ ମଧ୍ୟରେ ରହି ଆସୁଛନ୍ତି । ପିଅଦର୍ଶୀ ଅଶୋକଙ୍କର ସ୍ୱପ୍ରଶସ୍ତିମୂଳକ ଶିଳାଲେଖରେ ମଧ୍ୟ ସେମାନଙ୍କୁ ଆଟବିକ ବୋଲି କୁହାଯାଇଛି । ଏବେ ମଧ୍ୟ ଏମାନଙ୍କର ଗୃହର ଭାଷା ଓଡ଼ିଆ ନୁହେଁ, ଅଲିଖିତ ହେଲେ ମଧ୍ୟ ଏମାନଙ୍କର ଆପଣାର ଗୋଟିଏ ଗୋଟିଏ ବୋଲିବା ଭାଷା ରହିଛି । ଓଡ଼ିଶାର ଧର୍ମ, ସଂସ୍କୃତି, ଆର୍ଥିକ ଜୀବନ ଓ ସାମାଜିକ ବହୁ ଚଳଣିର ମୂଳଦୁଆକୁ ଏହିମାନେ ଗଢ଼ିଛନ୍ତି । ଆମର ଅନେକ ଦେବ ଓ ଦେବୀ, ପୂଜା ଓ ଉପାସନାର ବିବିଧ ଉପଚାର, ଆମର ନାନା ପର୍ବ, ଓଷା ଓ ଅନ୍ୟାନ୍ୟ ବିଧି,—ଏଗୁଡ଼ିକର ଆଦିସ୍ୱରୂପ ଖୋଜିବାକୁ ଯାଇ ଆମକୁ ସେହି ଆଟବିକମାନଙ୍କ ପାଖରେ ଯାଇ ପହଞ୍ଚିବାକୁ ହିଁ ହୋଇଥାଏ । ଆମ ତଥାକଥିତ ସଂସ୍କୃତି ଓ ଚଳଣିର ଏକ ବୃହତ୍ ଭାଗକୁ ଆମେ ସେହିମାନଙ୍କ ଠାରୁ ଆତ୍ମସାତ୍ ଅଥବା ଛିନ୍ନ କରି ଆଣିଛୁ । ସେହିମାନଙ୍କ ଠାରୁ ପିଣ୍ଡ ଆଣି ଆମେ ଯୁଗାନୁକ୍ରମେ ଆମ ନିଜର ଠାକୁରମାନଙ୍କୁ ଗଢ଼ିଛୁ । ଏକ ଗବେଷଣାରୁ ଲବ୍‌ଧ ତଥ୍ୟ ଅନୁସାରେ ଆମର ଏଡ଼େ ବୁନିଆଦି 'କଳିଙ୍ଗ' ଶବ୍ଦଟି ମଧ୍ୟ ସେହି ଅଷ୍ଟ୍ରିକ୍ ସଂସ୍କୃତିରୁ, କୋହ୍ଲମାନଙ୍କ ଠାରୁ ଆହୃତ ହୋଇ ଆସିଥିବା ଏକ ଶବ୍ଦ ।

ଅଷ୍ଟ୍ରିକ୍‌ମାନଙ୍କ ପରେ ଦ୍ରାବିଡ଼ । ଆର୍ଯ୍ୟମାନଙ୍କ ଦ୍ୱାରା ବିତାଡ଼ିତ ହୋଇ ଉତ୍ତର ଭାରତରୁ ବାହାରି ଆସିବା ସମୟରୁ ସମ୍ଭବତଃ ଦ୍ରାବିଡ଼ମାନଙ୍କର ଆମର ଏହି ଭୂମିରେ ପ୍ରଥମ ପ୍ରବେଶ ଘଟିଛି । ପରବର୍ତ୍ତୀ ଯୁଗରେ ସେମାନେ ଦକ୍ଷିଣ ଦିଗରୁ ମଧ୍ୟ ଏଠାକୁ ଆସିଛନ୍ତି । ଖାରବେଳ ଦ୍ରାବିଡ଼ ଥିଲେ ଓ ବାହାରୁ ଓଡ଼ିଶା ଭିତରକୁ ଆସିଥିଲେ ବୋଲି ଏକ ଐତିହାସିକ ଅନୁମାନ ରହିଛି । ଖ୍ରୀଷ୍ଟ ଏକାଦଶ ଶତାବ୍ଦୀରେ ଏଠାରେ ହୁଏତ ସର୍ବପ୍ରଥମେ ସକଳ—କଳିଙ୍ଗାଧିପତି ବୋଲାଉଥିବା

ଗ୍ରେଳମାନେ ଦକ୍ଷିଣ ବା ଦ୍ରାବଡ଼ ଦେଶରୁ ଆସିଛନ୍ତି । ଶଙ୍କର, ରାମାନୁଜ, ନିମ୍ବାର୍କ, କୁମାରିଲ ଭଟ୍ଟ,—ଓଡ଼ିଶାର ଧର୍ମୋପାସନାକୁ ବହୁଭାବେ ଆବର୍ତ୍ତିତ ଓ ବିବର୍ତ୍ତିତ କରିଥିବା ଏହି ପଣ୍ଡିତମାନେ ଦକ୍ଷିଣ ଭାରତରୁ ହିଁ ଓଡ଼ିଶାକୁ ଆସିଛନ୍ତି । ତାମିଲ ଦେଶର ଅଲ୍‌ୱାର୍ ଏବଂ ନୟନାର୍‌ମାନେ ହିଁ ଓଡ଼ିଶାରେ ବିଷ୍ଣୁ-ଉପାସନାର ସର୍ବ-ପ୍ରଥମ ପ୍ରେରଣା ପ୍ରଦାନ କରିଛନ୍ତି । ଉତ୍ତର ଦିଗରୁ ଶ୍ରୀ ଚୈତନ୍ୟଦେବଙ୍କର ଉତ୍କଳ—ଆଗମନର ଏହା ବହୁ ପୂର୍ବର ଘଟଣା । ଓଡ଼ିଆ ଭାଷା ଓ ଓଡ଼ିଆ ଲିପି ଦ୍ରାବଡ଼ ଭାଷା ଏବଂ ଦ୍ରାବଡ଼ ଲିପିଦ୍ୱାରା ବହୁଭାବରେ ପ୍ରଭାବିତ ହୋଇଛି । ଓଡ଼ିଶାର ବାସ୍ତୁ ଏବଂ ମନ୍ଦିରକଳା,—ଏହାର ଅଳଙ୍କରଣର ଅସଲ ସାମଞ୍ଜସ୍ୟଗୁଡ଼ିକୁ ଦେଖିବା ଲାଗି ଆମକୁ ହୁଏତ ଉତ୍ତର ଭାରତକୁ ନୁହେଁ ଦକ୍ଷିଣ ଭାରତକୁ ହିଁ ଯିବାକୁ ପଡ଼ିଥାଏ ।

ଉତ୍ତର ଭାରତର ଆର୍ଯ୍ୟମାନେ ଆମର ଏହି ଭୂମିକୁ ସବାପଛରେ ଆସିଛନ୍ତି । ଏକାଧିକ ତଥ୍ୟରୁ ଅନୁମାନ କରାଯାଉଛି ଯେ ଓଡ଼ିଶା ସମେତ ସମଗ୍ର ପୂର୍ବାଞ୍ଚଳୀୟ ଭାରତ ବେଶ୍ ବହୁକାଳ ପର୍ଯ୍ୟନ୍ତ ଯାବତୀୟ ଆର୍ଯ୍ୟ ଅନୁପ୍ରବେଶର ସଫଳ ଭାବରେ ପ୍ରତିରୋଧ ମଧ୍ୟ କରିଥିଲା । ଆର୍ଯ୍ୟମାନେ ଏହି ଅଞ୍ଚଳଟିକୁ ନିନ୍ଦାସୂଚକ ଭାବରେ ବ୍ରାତ୍ୟଭୂମି ବୋଲି କହୁଥିଲେ । ଉତ୍ତ୍ରଭାଷା ଆର୍ଯ୍ୟବିଦ୍ୟାର ସ୍ମୃତିକାରମାନଙ୍କ ଦ୍ୱାରା ଏକଦା ମ୍ଳେଚ୍ଛଭାଷା ବୋଲି ଗଣା ହେଉଥିଲା । କେବଳ ତୀର୍ଥଯାତ୍ରା ବ୍ୟତୀତ ଅନ୍ୟ କୌଣସି ଉପଲକ୍ଷ୍ୟରେ ଉତ୍କଳକୁ ଆସିବା ମଧ୍ୟ ନିଷିଦ୍ଧ ହୋଇ ରହିଥିଲା ଓ ତୀର୍ଥଯାତ୍ରାରେ ଏଠାକୁ ଆସିଥିବା ବ୍ୟକ୍ତିମାନଙ୍କୁ ଘରକୁ ଫେରିଯାଇ ଦୋଷର ମାର୍ଜନା ନିମନ୍ତେ ପ୍ରାୟଶ୍ଚିତ୍ତ କରିବାକୁ ପଡ଼ୁଥିଲା । ଖୁବ୍‌ସମ୍ଭବ ସମ୍ରାଟ ଅଶୋକଙ୍କର କଳିଙ୍ଗ-ଆକ୍ରମଣର ଅବ୍ୟବହିତ ପୂର୍ବରୁ ଓଡ଼ିଶାଭୂମିକୁ ଆର୍ଯ୍ୟମାନଙ୍କର ଆଗମନ ଘଟିଥିଲା । ଉତ୍ତର ଭାରତରେ ବିଭିନ୍ନ ଆର୍ଯ୍ୟଗୋଷ୍ଠୀ ମଧ୍ୟରେ ବସତି ସ୍ଥାପନ ଓ ବସତି-ସଂପ୍ରସାରଣ-ଜନିତ ନାନା ସଂଘର୍ଷ ଲାଗୁଥିଲା । ସମ୍ଭବତଃ ଏମାନଙ୍କ ମଧ୍ୟରୁ ପରାଜିତ ଗୋଷ୍ଠୀମାନେ ହିଁ ଆର୍ଯ୍ୟାବର୍ତ୍ତର ବିଶେଷ ମାଣ୍ଡଳିଟିରୁ ଉତ୍ତମର୍ଣ୍ଣମାନଙ୍କ ଦ୍ୱାରା ପରାଜିତ ବା ବିତାଡ଼ିତ ହୋଇ ଏଣେ ପଳାଇ ଆସିଥିଲେ । ଓଡ଼ିଶାରେ ଏହିପରି ଭାବରେ ଆର୍ଯ୍ୟ ସଭ୍ୟତାର ସଂକ୍ରମଣ ଘଟିଲା ।

ଏହିପରି ଭାବରେ ଅଷ୍ଟ୍ରିକ୍ ଓ ଦ୍ରାବଡ଼ ସଭ୍ୟତାର ମୂଳଗୁଡ଼ିକ ସହିତ ଆର୍ଯ୍ୟସଭ୍ୟତାର କଲମି ହୋଇ ଓଡ଼ିଶାରେ ଏକ ମିଶ୍ର ସଭ୍ୟତାର ପତ୍ତନ

ହୋଇଥିଲା । ତେଣୁ, କେବଳ ଆଦିବାସୀମାନଙ୍କୁ ଛାଡ଼ିଦେଲେ ବର୍ତ୍ତମାନ ଓଡ଼ିଶାରେ ବାସ କରୁଥିବା କେହି କଦାପି କେବଳ ଦ୍ରାବିଡ଼ ଅଥବା କେବଳ ଆର୍ଯ୍ୟ ବୋଲି ବୋଲାଇ ପାରିବ ନାହିଁ । ନୃତତ୍ତ୍ୱବିତ୍‌ମାନେ କହନ୍ତି ଯେ, ଓଡ଼ିଶାର ଅଧିବାସୀମାନଙ୍କ ଦେହରେ ମୂଳତଃ ଦ୍ରାବିଡ଼ ଓ ମଙ୍ଗୋଲ ରକ୍ତର ଉପାଦାନମାନ ରହିଛି । ଠିକ୍ ସେହିପରି ଭାବରେ, ଓଡ଼ିଶାରେ ହିନ୍ଦୁଧର୍ମ ଓ ବୌଦ୍ଧଧର୍ମ ମଧ୍ୟ ପରସ୍ପର ସହିତ ଏପରି ଗୁଡ଼ାଇ ଗୁଡ଼ାଇ ହୋଇ ଏକାଧିକ ଶତାବ୍ଦୀ କାଳ ରହିଆସିଛନ୍ତି ଯେ, ଓଡ଼ିଶାରେ ଆମେ କେହି ନିଜକୁ କେବଳ ହିନ୍ଦୁ ଅଥବା କେବଳ ବୌଦ୍ଧ ବୋଲି କହିପାରିବା ନାହିଁ । ସମ୍ରାଟ ଅଶୋକଙ୍କ ଦ୍ୱାରା ରାଜାଦେଶ-ପ୍ରସ୍ତୁତ ବୌଦ୍ଧଧର୍ମ ଯେ ଓଡ଼ିଶାରେ ବେଶୀ ଗଭୀରକୁ ଚେର ଭେଦାଇ ପାରିନଥିଲା, ସେପରି ଅନୁମାନ କରିବାଲାଗି କେତେକ କାରଣ ରହିଛି । ତାଙ୍କର ପରବର୍ତ୍ତୀ 'ବଡ଼ ରାଜା' ଖାରବେଳ ବୌଦ୍ଧ ନଥିଲେ । ଏବଂ, ଯେତେବେଳେ ଓଡ଼ିଶାର ମାଠର ପ୍ରଭୃତି ରାଜବଂଶମାନେ ବୌଦ୍ଧଧର୍ମକୁ ରାଜଧର୍ମ ରୂପେ ଗ୍ରହଣ କଲେ, ସେତେବେଳେ ଗୌତମ ବୁଦ୍ଧଙ୍କ ଦ୍ୱାରା ପ୍ରସ୍ତୁତ ଅସଲ ଧର୍ମ-ଆବେଦନଟି କେତେ ଅନ୍ୟଅନ୍ୟ ଅନ୍ୟ ନାନା ଗଢ଼ଣ ଭିତରକୁ ହୁଡ଼ି ଚାଲି ଯାଇଥିଲା । ହୀନଯାନରୁ ମହାଯାନ ବାଟେ ବଜ୍ରଯାନ ପର୍ଯ୍ୟନ୍ତ ବଦଳି ବଦଳି ଆସିଥିବା ବୌଦ୍ଧଧର୍ମର ଧାରାଟି ପ୍ରକୃତରେ ମୂଳ ଧର୍ମଟି କ୍ରମଶଃ ଏକ ହିନ୍ଦୁ ପରିଚ୍ଛଦ ପିନ୍ଧି ଅଧିକରୁ ଅଧିକ ଲୋକଗ୍ରାହ୍ୟ ହେବାକୁ ମନ ବଳାଇ ଥିବାର ଏକ ଭାରି କୌତୁକମୟ ଇତିହାସ । ଓଡ଼ିଶାର ପୁଷ୍ପଗିରି-ବିହାର ସେହି ବଜ୍ରଯାନ ସମୟର ଏକ ଘଟଣା । ସେତେବେଳେ ତଥାକଥିତ ବୁଦ୍ଧ-ଆଶ୍ରିତ ଧର୍ମଟି ଏକାଧିକ ଦୃଷ୍ଟିରୁ ଏକ ବ୍ରାହ୍ମଣ୍ୟ ମୂର୍ତ୍ତିଧର୍ମରେ ପରିଣତ ହୋଇ ସାରିଥିଲା । କଥିତ ଅଛି, ରାଜତାଡ଼ନାରେ ବାଧ୍ୟ ବା ପ୍ରଲୁବ୍ଧ ହୋଇ ଏକଦା ଯେଉଁ ହିନ୍ଦୁମାନେ ହଠାତ୍ ବୌଦ୍ଧଧର୍ମର ଦୀକ୍ଷା ଗ୍ରହଣ କରି ବୌଦ୍ଧ ହୋଇ ପଡ଼ିଥିଲେ, ବୌଦ୍ଧଧର୍ମକୁ ପ୍ରାୟ ଅବିକଳ ଏକ ହିନ୍ଦୁ ଉପାସନା-ଧର୍ମରେ ପରିଣତ କରିବାରେ ସେହିମାନେ ହିଁ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ।

ହିନ୍ଦୁଧର୍ମ ଓ ବୌଦ୍ଧଧର୍ମ ସମାନ୍ତର ଭାବରେ ଓଡ଼ିଶାକୁ ଜୈନଧର୍ମ ଆସିଛି,—ସେହି ଗୋଟିଏ ହିନ୍ଦୁଧର୍ମ ଭିତରେ ରହିଥିବା ବିଭିନ୍ନ ଉପାସନା-ମାର୍ଗ, ଶାକ୍ତ, ଶୈବ, ବୈଷ୍ଣବ ଓ ତାନ୍ତ୍ରିକ,—ଓଡ଼ିଶାରେ ସବୁଗୁଡ଼ିକର ବିକାଶ ହୋଇଛି । ଭିନ୍ନ ଭିନ୍ନ ଉପାସନାର ଅନୁରୂପ ହୋଇ କେତେ ପ୍ରକାରର ପୀଠ ମଧ୍ୟ

ଏହି ଭୂମିରେ ବିକଶିତ ହୋଇ ଆସିଛି । ଉପରେ ରାଜାମାନେ ଅଥବା ରାଜବଂଶ-ମାନେ ଭିନ୍ନ ଭିନ୍ନ ମତ ଓ ମାର୍ଗର ପୃଷ୍ଠପୋଷକତା କରିଛନ୍ତି; ଉପରକୁ ଦେଖିବାକୁ ସେହି ମାର୍ଗର ଜୟ ଜୟକାରଟି ସବୁଠାରୁ ଉଚ୍ଚ ହୋଇ ରାଜ୍ୟଯାକ ଉଡ଼ିଛି । ମାତ୍ର, ଯେତେ ଗୌଣ ଭାବରେ ବା ଯେତେ ଅନ୍ତରାଳରେ ହେଲେ ମଧ୍ୟ ଅନ୍ୟାନ୍ୟ ମାର୍ଗଗୁଡ଼ିକ ମଧ୍ୟ ତଥାପି ସକ୍ରିୟ ହୋଇ ରହିଛନ୍ତି । ରାଜାନୁକମ୍ପା ଲାଭ କରିବାକୁ ମାର୍ଗ ମାର୍ଗ ଭିତରେ ଲଢ଼ାଇ ଲାଗିଛି । ମାତ୍ର ଲୋକଧର୍ମର ସ୍ତରରେ ନାନାବିଧ ବିଧି ଏବଂ ଭେକଠାରେ ଘଣ୍ଟାଘଣ୍ଟି ହୋଇ ପ୍ରାୟ ସବୁଯାକ ମାର୍ଗ ବଞ୍ଚି ରହିଛି । ବିଭିନ୍ନ ଧର୍ମ ଓ ଧର୍ମୀୟତାକୁ ପୁଞ୍ଜି କରି କେତେ କେତେ କାହାଣୀ ଗଠିତ ହୋଇ ଆସିଛି । ସାରଳାଦାସ ଆପଣାର ଓଡ଼ିଆ ମହାଭାରତରୂପୀ କାବ୍ୟୋ-ପନ୍ୟାସରେ ସେହିଗୁଡ଼ିକୁ ଲୋକମୁଖରୁ ସଂଗ୍ରହ କରି କେଡ଼େ ସୁରମ୍ୟ ଭାବରେ ଏକତ୍ର ଆଣି ଗୁନ୍ଥି ଦେଇଛନ୍ତି । ତାଙ୍କ ଉଦ୍ୟମଟିର କେତେକ ଯୋଗ୍ୟ ଅନୁଗାମୀ ଭାବରେ ରାମାୟଣ, ଭାଗବତ ଏବଂ ହରିବଂଶ ମଧ୍ୟ ଓଡ଼ିଆରେ ଲେଖା ହୋଇଛି । ବୃହତ୍ତର ଭାରତୀୟ ପରମ୍ପରାର ସକଳ ଶାଳୀନତାକୁ ଅକ୍ଷୁନ୍ନ ରଖି ତଥାପି ଏକ ସ୍ଥାନୀୟ କ୍ଷୁଦ୍ର ପରମ୍ପରା ଉପରେ ତଥାପି ଆପଣାର ନିଜସ୍ୱ ମହିମାକୁ ଅତିବ ହୃଦୟଗ୍ରାହୀ ଭାବରେ ପ୍ରକଟ କରିବାରେ ସମର୍ଥ ହୁଏ, ଓଡ଼ିଆ ସାହିତ୍ୟର ଏତାଦୃଶ ମହାନ ଗ୍ରନ୍ଥ ତାହାର ଗୋଟିଏ ଗୋଟିଏ ନିଜର ହୋଇ ରହିଛନ୍ତି ।

ଗବେଷଣା କହୁଛି, ଜଗନ୍ନାଥ ପ୍ରଥମେ ଆଦିବାସୀ ମାନଙ୍କର ଦେବତା ଥିଲେ । ତାହାଙ୍କୁ ହିନ୍ଦୁମାନେ ଆତ୍ମସାତ୍ କରି ଆଣିଛନ୍ତି । ରାଜ-ପୃଷ୍ଠପୋଷକତାର ବିଭିନ୍ନ ପର୍ଯ୍ୟାୟରେ ଜଗନ୍ନାଥରୂପୀ କଳ୍ପନାଟି ଉପରେ ବୌଦ୍ଧଧର୍ମ, ଜୈନଧର୍ମ ଓ ଆହୁରି କେତେକେତେ ଉପାସନାମାର୍ଗକୁ ଆଣି ବୋଲି ଦିଆଯାଇଛି । ଲୋକସ୍ତରର ଏକ ବିହ୍ୱଳ ଭକ୍ତି ତାହାଙ୍କୁ କେଡ଼େ ଚମତ୍କାର ଭାବରେ ସବୁଦେଇଥିବା ଏକ ଐଶ୍ୱର୍ଯ୍ୟଶାଳୀତା ବୋଲି ଗ୍ରହଣ କରି ନେଇଛି । ତାହାଙ୍କୁ ଆଉ ଏକ ପ୍ରକାରର ବିହ୍ୱଳତାରେ ଏକ ସମନ୍ୱୟ ବୋଲି କୁହାଯାଇଛି । ବେଦାନ୍ତ ଦର୍ଶନର ମାର୍ଗ-ସ୍ୱାମୀମାନେ ମଧ୍ୟ ସେମାନଙ୍କର ଦିଗ୍‌ବିଜୟ-କ୍ରମରେ ପୁରୀ ଆସିଛନ୍ତି, ପଣ୍ଡିତମାନଙ୍କୁ ପରାସ୍ତ କରି ଶ୍ରେଷ୍ଠ ବୋଲି ଘୋଷିତ ହୋଇଛନ୍ତି । ଏହାପରି ଭାବରେ ରାଜ୍ୟଶାସକ ଠାରୁ ମଧ୍ୟ ସ୍ୱୀକୃତି ଲାଭ କରି ନିଜନିଜ ମାର୍ଗର କେତୋଟି ବାହ୍ୟ ବିଧିକୁ ଶ୍ରୀମନ୍ଦିରର ଦୈନିକ ନୀତି ଭିତରେ ନେଇ ମିଶାଇ ଦେଇଛନ୍ତି । ସବୁଗୁଡ଼ିକୁ ଏକାଠି ମିଶାଇବା ଦ୍ୱାରା କଦାପି ଏକ ସମନ୍ୱୟ ସମ୍ଭବ ହୁଏନାହିଁ । ବାହାରର ବିଧିଗୁଡ଼ିକୁ

ଏକାଠି ଗୋଟିଏ ସମଷ୍ଟି ଭିତରେ ଆଣି ପକାଇଦେଲେ ତଦ୍ଦ୍ୱାରା ଅନ୍ତର୍ଗତ ଦୃଷ୍ଟିରେ ହୁଏତ ଆଦୌ କୌଣସି ପରିବର୍ତ୍ତନ ହୁଏନାହିଁ। ଆମ ନିଜ ଭୂମିର ଦେବତା ବୋଲି ହୁଏତ ଏକ ଐକାନ୍ତିକ ମମତା ଦ୍ୱାରା ପ୍ରେରିତ ହୋଇ ଆମେ ଜଗନ୍ନାଥଙ୍କୁ କେତେ କ'ଣ ମଣ୍ଡନ ଦ୍ୱାରା କେତେ କ'ଣ ବୋଲି ଦେଖାଇ ହେବାକୁ ଅବଶ୍ୟ ଉଦ୍ୟମ କରିପାରୁ । ସିଏ ଆମ ନିଜର ପିଣ୍ଡୁଳା ବୋଲି ଆମେ ତାଙ୍କୁ ଭୁବନଯାକର ସର୍ବଶ୍ରେଷ୍ଠ ପିଣ୍ଡୁଳା ବୋଲି କହି ଅନେକ ଗର୍ବ ମଧ୍ୟ ଅନୁଭବ କରିପାରୁ ।

ଓଡ଼ିଶାରେ ଜଗନ୍ନାଥ-ଉପାସକମାନେ ବେଳେବେଳେ ଜଗନ୍ନାଥଙ୍କୁ ଅବତାରୀ ବୋଲି କହିଛନ୍ତି । ଆଉ ଯେତେ ଦେବାଦେବୀ, ସେମାନେ ଅବତାର, ସେମାନେ ଜଗନ୍ନାଥଙ୍କ ମଧ୍ୟରୁ ଉଦ୍‌ଭୂତ,-କାରଣ ଜଗନ୍ନାଥ ହେଉଛନ୍ତି ଅବତାରୀ। ପୃଥିବୀରେ ଏକାଧିକ ଧର୍ମର କ୍ଷେତ୍ରରେ ଏକ ଅତ୍ୟାଗ୍ରହର ବଶବର୍ତ୍ତୀ ହୋଇ ଉପାସକମାନେ ନିଜର ଉପାସ୍ୟ ପ୍ରତିକଳ୍ପନାଟିକୁ ମମତ୍ୱର ପୁଲକରେ ଅବତାରୀ ଅର୍ଥାତ୍ ଯାବତୀୟ ଅନ୍ୟ ଅବତାର ମାନଙ୍କର ମୂଳ ଉତ୍ସ ବୋଲି କହିଛନ୍ତି । ଭାରତବର୍ଷରେ ଏହି ଭାବଟିକୁ ବିଶେଷ ଭାବରେ ଦେଖିବାକୁ ମିଳିଥାଏ । ଏହି ଭାବଟି ଧର୍ମପ୍ରମତ୍ତତାର କ୍ଷେତ୍ରରେ ଅନେକ ଚିତ୍ତାକର୍ଷକ ବୁଦ୍ଧିମତ୍ତା ଓ ମୋହାଚ୍ଛନ୍ନ-ତାର କାରଣ ହୋଇଥାଏ ସତ; ମାତ୍ର ତାହା ଅସଲ ସାଧନାରେ ଅନେକ ବାଧା ସୃଷ୍ଟି କରାଇଥାଏ । ଦୃଷ୍ଟିକୁ କଳି କଳି ଆଣିବାରେ ତାହା ଭାରି ସାହାଯ୍ୟ କରେ । ସମନ୍ୱୟର ଅସଲ ଅର୍ଥ ହେଉଛି ଅସାରକୁ ଛାଡ଼ି ଅସଲି ସାରକୁ ଯୋଡ଼ିବା । ନିଜର ପିଣ୍ଡୁଳାଟିକୁ ପ୍ରଧାନତଃ ନିଜର ଏକ ସମ୍ପତ୍ତି ବୋଲି ଭାବି ତାହାକୁ ହିଁ ସର୍ବସାର ବୋଲି ଦାବୀ କରିବା,-ତାହା କଦାପି ସମନ୍ୱୟ ନୁହେଁ । ଅଥବା, ବିଭିନ୍ନ ଆଉ ବିଭିନ୍ନ ସନ୍ତକ ଆଣି ନିଜର ପିଣ୍ଡୁଳାଟି ସହିତ ଏକାଠି କରି ବାନ୍ଧିଦେବା, ସେଇଟି ମଧ୍ୟ ଆମକୁ ଯଥାର୍ଥ ସମନ୍ୱୟ ଠାରୁ ଅନେକ ଦୂରକୁ ନେଇ ଯାଇଥାଏ ।

ତନ୍ତ୍ରଶାସ୍ତ୍ରରେ ମନ୍ମାଥ ଓ ଜଗନ୍ନାଥର ତୁଳନାତ୍ମକ ଆଲୋଚନା କରାଯାଇଛି । ତନ୍ତ୍ରଶାସ୍ତ୍ର ଅର୍ଥାତ୍ ତାନ୍ତ୍ରିକ ସାଧାନାର ଶାସ୍ତ୍ର । ଚେତନାର ଏକ ଉତ୍ତରୋତ୍ତର ଅଗ୍ରଗତି ଅର୍ଥାତ୍ ସମ୍ପ୍ରସାରଣକୁ ହିଁ ସାଧନା କୁହାଯାଏ । ଚେତନା ସମ୍ପ୍ରସାରିତ ହେଲେ ପୌତ୍ତଳିକତାର ଯାବତୀୟ ମୋହ ତୁଟିଯାଏ । ଅର୍ଥାତ୍, ପିଣ୍ଡୁଳାମାନେ ରହନ୍ତି ସତ, ମାତ୍ର ସେମାନେ ଆଉ ଦୌ ବାନ୍ଧି ପକାନ୍ତିନାହିଁ । ମନ୍ମାଥ ଜଗନ୍ନାଥରେ ପରିଣତ ହୁଅନ୍ତି । ପିଣ୍ଡ ଭିତରେ ବ୍ରହ୍ମାଣ୍ଡ ଦେଖାଯାଏ । ମନ୍ମାଥର

ମାଧ୍ୟମରେ ଜଗନ୍ନାଥ ଯାଏ ପହଞ୍ଚି ପାରିବା, ହୁଏତ ତାହାକୁ ହିଁ ଆମେ ଜଗନ୍ନାଥ-ଚେତନା ବୋଲି କହିପାରିବା । ସେହି ଚେତନାକୁ ଆମ ଉପଲବ୍ଧିର ଅସଲ ଆକାଶରୂପେ ଗ୍ରହଣ କରି ହୁଏତ ଏକ ଜଗନ୍ନାଥ—ସାଧନାର ମଧ୍ୟ କଳ୍ପନା କରି ଯାଇପାରେ । ତନ୍ତ୍ରଶାସ୍ତ୍ରରେ ତାହାରି ସୂଚନା ଦିଆଯାଇଛି । ମାତ୍ର ସେ ଜଗନ୍ନାଥ ଏ ଜଗନ୍ନାଥ ନୁହନ୍ତି । ଓଡ଼ିଶାର ଏକ ବଜ୍ରଯାନ-ପୋଥିରେ ଗ୍ରନ୍ଥବନ୍ଦନାରେ ଯାହାଙ୍କୁ ସର୍ବଜ୍ଞାନବର୍ଜିତ ଜଗନ୍ନାଥ ବୋଲି କୁହାଯାଇଛି, ସିଏ ମଧ୍ୟ ଆମ ଶ୍ରୀକ୍ଷେତ୍ରର ଜଗନ୍ନାଥ ନୁହନ୍ତି । ଦକ୍ଷିଣ ଭାରତର ରୁଦ୍ର ଭଟ୍ଟ ଖ୍ରୀଷ୍ଟ ଦ୍ୱାଦଶ ଶତାବ୍ଦୀରେ କନ୍ନଡ଼ ଭାଷାରେ "ଜଗନ୍ନାଥ-ବିଜୟ' ବୋଲି ଯେଉଁ ଗ୍ରନ୍ଥ ଲେଖିଛନ୍ତି, ସେଥିରେ ମଧ୍ୟ ଆମ ଘରର ଏହି ଜଗନ୍ନାଥଙ୍କ ସହିତ ଆଦୌ କୌଣସି ସମ୍ବନ୍ଧ ନାହିଁ । ଆମର ଏହି ସାନ ଘରର ସାଧନା ତଥା ଆଗ୍ରହକୁ ସମଗ୍ର ବିଶ୍ୱମାଉଡ଼ଟି ଲାଗି ଉଦ୍ଦିଷ୍ଟ କରି ରଖିବା, ତାହାହିଁ ବିଶ୍ୱଚେତନା, ଓ ଏହି ବିଶ୍ୱଚେତନାର ଅନ୍ୟ ଏକ ନାମ ହେଉଛି ଜଗନ୍ନାଥ-ଚେତନା । ସେହି ଚେତନାକୁ ନେଇ ପିନ୍ଧାଇ ପଣ୍ଡାପଡ଼ିଆରେ ଖଟାଇ ସିଏ ଏକ ବିଗ୍ରହ କରି ବସାଇଦେବ ଓ ତାକୁ ଆମର ଏହି ସାନ ଉଦହଟିର ସବାବଡ଼ ସାମନ୍ତ ବୋଲି ଏଡ଼େବଡ଼ ପାଟିରେ କହିବାରେ ଲାଗିଥିବ, ସିଏ ଅସଲ ଜଗନ୍ନାଥ-ଚେତନାର କୌଣସି ପତ୍ତା ହିଁ ପାଇବନାହିଁ । ଜଗନ୍ନାଥ-ଚେତନା କୌଣସି ଜାତି ବା କୌଣସି ଜନପଦର ସମ୍ପତ୍ତି ନୁହେଁ, ତାହାକୁ କଦାପି ଏକ ଦେଉଳ ବା ଦେବସ୍ଥାନ ଭିତରେ ଆବଦ୍ଧ କରି ରଖାଯାଇ ପାରିବ ନାହିଁ । ଭିତରେ ଅନେକ ଦେଉଳ ଭାଙ୍ଗିଲେ ଯାଇ ଅସଲ ସମଗ୍ରତାଟିର ଦର୍ଶନ ମିଳିପାରିବ । ବାଟ କାଛର ଅନେକ ମୂର୍ତ୍ତିଙ୍କୁ ଡେଇଁ ପାରିଲେ ଯାଇ ଅସଲ ମର୍ମଟି ସହିତ ହୃଦ୍‌ସ୍ପର୍ଶ ସମ୍ଭବ ହୋଇ ପାରିବ ।

ଏହି ଅବକାଶରେ ଯାବତୀୟ ଆଲୋଚନାରେ ଓଡ଼ିଶାର ପଞ୍ଚସଖା ଯେ ଏକ ବିଶେଷ ସ୍ଥାନ ଅଧିକାର କରିବେ, ସେ କଥା ଅତ୍ୟନ୍ତ ସ୍ପଷ୍ଟ ହୋଇଯିବା ଉଚିତ । ଓଡ଼ିଶାର ସନ୍ଥ-ପରମ୍ପରା ଭାରତୀୟ ସନ୍ଥ ପରମ୍ପରା ଲାଗି ଏକଦା ଏକ ବଳିଷ୍ଠ ଅବଦାନ ଯୋଗାଇ ଦେଇଥିଲା, ସଂସ୍କୃତିକୁ ପ୍ରଧାନତଃ ଏକ ଉଦ୍‌ବିସ୍ତାର ବୋଲି ବୁଝୁଥିବା ପ୍ରତ୍ୟେକ ଓଡ଼ିଶାବାସୀ ସେକଥାକୁ ଅବଶ୍ୟ ସ୍ମରଣ ରଖିଥିବ । ଓଡ଼ିଶାର ସନ୍ଥମାନେ ଏହି ଭୂମିରେ ଥିଲେ, ତଥାପି ସେମାନେ କେବଳ ଏହି ଭୂମିର ନଥିଲେ । ସେମାନଙ୍କର ଚେରଗୁଡ଼ିକ ଆମର ସ୍ଥାନୀୟ ଏହି ଭୂମିଟିକୁ ଭେଦ କରି ଗଳିଥିଲା; ମାତ୍ର ଚେର ଯେତିକି ଗଭୀରକୁ ଭେଦ ପାରିଲେ

ତାହାଦ୍ୱାରା ଏକ ବର୍ଣ୍ଣଜମାନତାର ସ୍ତରକୁ ସ୍ପର୍ଶ କରି ହୁଏ ଏବଂ ସେହି ବର୍ଣ୍ଣଜମାନତାର ପରିପ୍ରେକ୍ଷୀରେ ହିଁ ଯାବତୀୟ ସ୍ୱାଧୀନତା ଓ ସ୍ୱାଧୀନ ଭୂମିର ବିବଚ୍ଚ ବ୍ୟଞ୍ଜନାରୂପଟିକୁ ଆଘ୍ରାଣ କରି ହୁଏ, ଓଡ଼ିଶାର ସନ୍ଥମାନେ, ନିଜର ..ତେର ଗୁଡ଼ିକୁ ସେଞ୍ଚିକ ଗଭୀରକୁ ଭେଦାଇ ପାରିଥିଲେ । ସେମାନେ ତୁଚ୍ଛା ବାହ୍ୟିକତା ବ୍ୟତୀତ ଆଉ କୌଣସି କଣ୍ଟୁକୁ ଅସ୍ୱୀକାର କରି ନଥିଲେ । ମୂର୍ତ୍ତି ସେପାଖକୁ ଦେଖି ପାରୁଥିବା ମଣିଷ କଦାପି ମୂର୍ତ୍ତିକୁ ଭୟ କରେନାହିଁ । ଜହିତାର୍ଥଗୁଡ଼ିକୁ ଠଉରାଇ ନେଇ ପାରୁଥିବା ମଣିଷ କଦାପି ବାଚ୍ୟାର୍ଥକୁ ଭୟ କରେନାହିଁ । ଓଡ଼ିଶାର ସନ୍ଥମାନେ ବାସ୍ତରେ କେତେକେତେ ଖଣ୍ଡକଳ୍ପନା ଓ ଖଣ୍ଡଦେବତା ମାନଙ୍କୁ କାଟି ଦେବନାଶନ ବାଟ ଯାଏ ପହଞ୍ଚ ପାରିଥିଲେ । ଖ୍ରୀଷ୍ଟ ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ ସମଗ୍ର ଭାରତବର୍ଷରେ ପ୍ରଚଳିତ ବାହ୍ୟକତା ଗୁଡ଼ିକ ବିରୁଦ୍ଧରେ ସନ୍ଥମାନେ ଯେଉଁ ବଳିଷ୍ଠ ପ୍ରତିବାଦ ଜଣାଇଥିଲେ, ଓଡ଼ିଶାର ସନ୍ଥମାନେ ସେହି ଉଦ୍‌ବେଳନ ଲାଗି ଆପଣାର ଏକ ଗୌରବମୟ ଅବଦାନ ଆଣି ପହଞ୍ଚାଇ ପାରିଥିଲେ । ସେମାନେ ରାଜଧର୍ମର ଯାବତୀୟ ବାଡ଼କୁ କାଟି ଦେଇଥିଲେ, ତତ୍କାଳୀନ ସମାଜର ଅନେକ ଅସୁନ୍ଦରତାକୁ ଅସ୍ୱୀକାର କରି ମନୁଷ୍ୟକୁ, ପ୍ରତ୍ୟେକ ମନୁଷ୍ୟକୁ ତାରି ଦ୍ରବ୍ୟ ଅର୍ଥାତ୍ ସମ୍ମାନିତ ପରିଚୟରେ ଚିହ୍ନିବା ନିମନ୍ତେ ଆହ୍ୱାନ ଦେଇଥିଲେ । ସାଧକର ସାଧନା ଯେ ଏକ ଲୋକଜାଗରଣର ମଧ୍ୟ କାରଣ ହୋଇପାରେ, ଜଣେ ଅସଲ ସନ୍ଥ ଯେ ସତେଅବା ଏକ ଆଧ୍ୟାତ୍ମିକ ପ୍ରୟୋଜନ ଦ୍ୱାରା ପ୍ରେରିତ ହୋଇ ଏକାବେଳେକେ ବହୁଜନଙ୍କର ଉଦୟ ଲାଗି ସାମୂହିକ ଜୀବନର ସର୍ବନିମ୍ନ ସ୍ତରକୁ ଓହ୍ଲାଇ ଆସିପାରେ, ଓଡ଼ିଶାର ପଞ୍ଚସଖା ସେହି କଥାଟିର ଉଜ୍ଜ୍ୱଳ ଦୃଷ୍ଟାନ୍ତ ହୋଇ ସବୁଦିନ ରହିଥିବେ ଏବଂ ଆମକୁ ପ୍ରେରଣା ଦେବାରେ ଲାଗିଥିବେ ।

ସଂସ୍କୃତର ଯାବତୀୟ ଅର୍ଗଳକୁ ଅସ୍ୱୀକାର କରି ଭାରତର ସେହି ମଧ୍ୟଯୁଗୀୟ ସନ୍ଥମାନେ ଲୋକଭାଷା ଗୁଡ଼ିକୁ ଏକ ମହିମାମୟ ହିଁ ବିଶ୍ୱାସଯୁକ୍ତ ପ୍ରତିଷ୍ଠା ଆଣି ଦେଇ-ଥିଲେ । ସେହି ଆନ୍ଦୋଳନର ପ୍ରକୃତ ମୁହୂର୍ତ୍ତଟି ଆସି ପହଞ୍ଚ ଯାଇଥିବା ପରି ସେତେ-ବେଳେ ପ୍ରକୃତରେ ସନ୍ଥ ହିଁ ଜିତିଲେ ଓ ପଣ୍ଡିତମାନେ ହାରିଗଲେ । ସେହି ସମୟରେ ଓଡ଼ିଶାର ପଞ୍ଚସଖା ଆମର ଏହି ସ୍ୱାଧୀନ ଭୂମିରେ ଚଳନ୍ତ ଭାଷାଟିର ଧାରାକୁ ଏକ ବହୁ ସମ୍ଭାବନା ମଧ୍ୟକୁ ଉଦ୍‌ବୁଦ୍ଧ କରି ନେଇ ପାରିଥିଲେ । ଭାରତୀୟ ଦର୍ଶନ ଓ ସାଧନାର ଗହନ ତତ୍ତ୍ୱବ୍ୟଞ୍ଜନା ଗୁଡ଼ିକୁ ସେମାନେ ଯେପରି ସାବଲୀଳ ଭାଷାରେ

ଆପାମର ସମସ୍ତଙ୍କ ଲାଗି ବ୍ୟକ୍ତ କରି ପାରିଥିଲେ, ଏବେ ମଧ୍ୟ ଓଡ଼ିଆ ଭାଷାକୁ ତଥାପି ଅଧିକ ଅଭିବ୍ୟକ୍ତି ସମର୍ଥ କରିବା ନିମନ୍ତେ ପ୍ରୟାସ କରୁଥିବା ପ୍ରତ୍ୟେକ ଓଡ଼ିଆ ଲାଗି ତାହା ଅନେକ ଅନ୍ତଃଦୃଷ୍ଟି ଯୋଗାଇଦେଇ ପାରୁଛି । କେବଳ ସତ୍ୟକୁ ଉପଲବ୍ଧି କରିଥିବା ଜଣେ ବ୍ୟକ୍ତି ହିଁ ସତ୍ୟକୁ ଏତେ ସହଜ ଭାଷା ଦେଇ ବ୍ୟକ୍ତ କରିବାକୁ ସମର୍ଥ ହେବ । ପଞ୍ଚସଖା କେବଳ ପଦ୍ୟରେ ହିଁ ଓଡ଼ିଆ ଭାଷାର ସମ୍ଭାବନାକୁ ନେଇ ସାହସୀ ପ୍ରୟୋଗମାନ କରିଥିଲେ । ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ସନ୍ଥ ଅରକ୍ଷିତ ଦାସ ଓଡ଼ିଆ ଗଦ୍ୟକୁ ମଧ୍ୟ ବହୁତରସମର୍ଥତାର ଶ୍ରେୟଃ ଆଣି ଦେଇଥିଲେ । ଭାଷାକୁ ସଂସ୍କୃତର କର୍କଶ ଗଣ୍ଡି ଓ ଅସ୍ଥି ଭିତରେ ବାନ୍ଧି ରଖିବା ସକାଶେ ପ୍ରାୟ ଦୁଇଶହ ବର୍ଷ ଯାବତ୍ କବିପଣ୍ଡିତ କାରିଗରମାନେ ପ୍ରାୟ ଯେଉଁ ଅଭିସନ୍ଧି ଲଗାଇ ଆସିଥିଲେ, 'ମହାମଣ୍ଡଳ ଗୀତା' ରେ ଅରକ୍ଷିତ ଦାସ ସେମାନଙ୍କୁ ସତେଅବା ଫୁଟ୍କି ମାରି କୁଆଡ଼େ ଉଡ଼ାଇଦେଲେ । ସେହି ପୋଥିରେ ଗଦ୍ୟରେ ଲିଖିତ ମାତ୍ର ଗୋଟିଏ ଅଧ୍ୟାୟରେ ସିଏ ଯେଉଁ ଅନବଦ୍ୟ ଗଦ୍ୟଗୌର-ବର ପରିଚୟ ଦେଇ ଯାଇଛନ୍ତି, ବର୍ତ୍ତମାନ ମଧ୍ୟ ଓଡ଼ିଆ ଭାଷାର ଗଦ୍ୟକୁ ତାହା କେତେ ପ୍ରେରଣା ଓ ସମାଧାନ ଯୋଗାଇ ଦେଇ ପାରିବ ।

ସନ୍ଥ ଭୀମଭୋଇଙ୍କୁ ଆମେ ପ୍ରଧାନତଃ ଜଣେ ବିଚକ୍ଷଣ ଓ ବିଶାଳ ହୃଦୟ କବି ବୋଲି କହି ଖୁସି ହୋଇ ଆସିଛୁ । ମାତ୍ର ଭାରତୀୟ ସଂସ୍କୃତି ଏବଂ ଜୀବନ-ଚେତନାର ଶାଶ୍ୱତ ବାଣୀଗୁଡ଼ିକୁ ସିଏ ସେହି ଜୀବନର ଅତ୍ୟନ୍ତ ନିକଟବର୍ତ୍ତୀ ହୋଇ ରହିଥିବା ଭାଷାରେ କିପରି ଫୁଟାଇ ପାରିଛନ୍ତି, ସେହି କଥାଟି ବିଷୟରେ ଯଥାର୍ଥ ଦ୍ୱାରୋଦ୍‌ଘାଟନକାରୀ ଯଥେଷ୍ଟ ଆଲୋଚନା ହୋଇନାହିଁ । ଅନେକ ସମାଲୋଚକ ତାଙ୍କୁ ମହିମା ଧର୍ମ ବା ସମ୍ପ୍ରଦାୟର ଜଣେ କବି ବୋଲି ଚିହ୍ନାଇ ଦେବାକୁ ଯଥେଷ୍ଟ ବୋଲି ମନେ କରିଛନ୍ତି । ମାତ୍ର ମହିମା କ'ଣ କେବଳଏକ ଧର୍ମ ନା ସମ୍ପ୍ରଦାୟ ? ମହିମା ହେଉଛି ମୂଳତଃ ଏକ ଜୀବନଦୃଷ୍ଟି । ସେହି ମହିମାର ପ୍ରଖ୍ୟାପନକୁ ଆମେ ବେଦର ପୁରୁଷସୂକ୍ତରେ ପାଇବା, ମୂଳ ଉପନିଷଦ ଗୁଡ଼ିକର ସେହିନାନା ସ୍ଥାନରେ ଦେଖିବାକୁ ପାଇବା । ବେଦର ପୁରୁଷସୂକ୍ତ କିମ୍ବା ଉପନିଷଦର ଶ୍ଳୋକଗୁଡ଼ିକ ଆଦୌ କୌଣସି ନିର୍ଦ୍ଦିଷ୍ଟ ଧର୍ମର ନୁହନ୍ତି,-ସେଗୁଡ଼ିକ ହେଉଛନ୍ତି ଯେ କୌଣସି ଯୁଗରେ ଓ ଯେ କୌଣସି ଦେଶରେ ଜଣେ ଯଥାର୍ଥ ଆଲୋକକାମୀ ମନୁଷ୍ୟର ସର୍ବଶ୍ରେଷ୍ଠ ବାସନା ଓ ଅଭୀପ୍ସା ଗୁଡ଼ିକ ଆଡ଼କୁ ଇଙ୍ଗିତ କରାଇ ଦେଉଥିବା ଗୋଟିଏ

ଗୋଟିଏ ମନ୍ତ୍ର । ଶ୍ରୀମଦ୍ଭୋଇଙ୍କର 'ସ୍ତୁତି ଚିନ୍ତାମଣି' ଗ୍ରନ୍ଥର ସେହି ସନ୍ଧାନୀପଣାକାଶ ଦୃଷ୍ଟିରୁ ଅଧିକରୁ ଅଧିକ ଆଲୋଚନା ହୋଇ ପାରିବା ଉଚିତ ।

ସେହି ମହିମା ମନୁଷ୍ୟ ଭିତରେ ରହିଛି । ତେଣୁ ଅସଲ ପଥଚର୍ଯ୍ୟାଟି କଦାପି କୌଣସି କର୍ମକାଣ୍ଡ ଅଥବା ବାହ୍ୟ ଗୌଣ୍ଡଳକତା ମଧ୍ୟରେ ବାନ୍ଧି ହୋଇ ରହି ପାରିବନାହିଁ । ସେହି ଚର୍ଯ୍ୟା ପାହାଚପରେ ପାହାଚକୁ ପାର ହୋଇ ଚାଲିଯିବା ଆମ ଦେଶର ଜଣେ ଆଦିବାସୀ କବି ମୁଖରୁ ଏସବୁ ସାହସିକ ଯାତ୍ରାର କଥା ବାହାରିଛି, ତାହା ଏହି ଭୂମିରେ ଆମ ସମସ୍ତଙ୍କୁ ଆହୁରି ଅଧିକ ସଚେତନ କରାଇଦେଇ ପାରୁଥିବା ଉଚିତ । ଯେଉଁମାନଙ୍କୁ ନାନା ଅପମାନକାରୀ ଅସମର୍ଥତା ଭିତରେ ପକାଇ ରଖି ହଜାରହଜାର ବର୍ଷ ଧରି ଶିଷ୍ଟ ସମାଜ କାଳେ କାଳେ ତାର ନିଜର ଆଯୁତନଟିକୁ ଅଲଗା କରି ଗଢ଼ିବ ବୋଲି ଯାବତୀୟ ଦାମ୍ଭିକ ଇଚ୍ଛା ପ୍ରକଟ କରି ଆସିଛି, ଯେଉଁମାନଙ୍କ ପ୍ରାପ୍ୟ ଅପହରଣ କରି ସମାଜର ଉଚ୍ଚମାନେ ସଭ୍ୟତାର ଯାବତୀୟ ଅନ୍ନକୁ ଏକା ଭୁଞ୍ଜିବାକୁ ହିଁ ସଭ୍ୟତା ବୋଲି କହି ଆସିଛନ୍ତି, ସେହି ଅଶିଷ୍ଟମାନଙ୍କ ଭିତରୁ ଜଣେ ପୁଅ ଏଠି ଆମ ସମସ୍ତଙ୍କୁ ଏକ ମହାନୀୟ ଭାବଚେତନା ଆଣି ଦେବାଲାଗି ଯାହସବୁ କହିଛି, ତାହାକୁ ଆମେ ଆହୁରି ଅଧିକ ଗଭୀର ଭାବରେ ବୁଝିବାକୁ ଚେଷ୍ଟା କରିବା । କଥିତ ଅଛି, ଶ୍ରୀମଦ୍ଭୋଇଙ୍କର ପ୍ରେରଣାରେ ଆଦିବାସୀମାନେ ଏକାଧିକବାର ଜଗନ୍ନାଥଙ୍କ ମନ୍ଦିର ଭିତରେ ପ୍ରବେଶ କରିବେ ବୋଲି ଚେଷ୍ଟା କରିଛନ୍ତି । ଜଗନ୍ନାଥଙ୍କୁ ପିତୁଳାଟିଏ କରି ବସାଇ ପୂଜା କରିବାର ଧୃଢ଼ ପ୍ରତିବାଦ କରିଛନ୍ତି । ଯାବତୀୟ ବିଗ୍ରହ ପରି ଏହି ଜଗନ୍ନାଥ-ବିଗ୍ରହ ମଧ୍ୟ କେବଳ ଏକ ପଥ, ଏକ **Passage,**—ତାହା ଅନ୍ତିମ ଲକ୍ଷ୍ୟ ଆଦୌ ନୁହେଁ । ଅନ୍ତିମ ଲକ୍ଷ୍ୟ ହେଉଛି ଜୀବନର ଉଦୟ । ସେହି ଉଦୟର ବାଞ୍ଛା କରିପାରିଲେ ରାଜା ବା ସାହୁକାର କେହି ବାଟ ଓଗାଳି ରଖି ପାରନ୍ତି ନାହିଁ । ଯେତେବେଳେ ନିଜକୁ କେବଳ ସେହି ସର୍ବୋଚ୍ଚ ସତ୍ତାଙ୍କର ପୁତ୍ର ବୋଲି ବୋଧ ହୁଏ । ଜୀବନ କେବଳ ତାଙ୍କରି ଆଜ୍ଞାରେ ଚାଲେ । ଦ୍ୱାରପାଳ ଅର୍ଦ୍ଧସତ୍ୟ ଓ ଅର୍ଦ୍ଧଦେବତାମାନେ ବନେବନେ ବାଟ ଛାଡ଼ିଦିଅନ୍ତି । ଆପଣା ଭିତରେ ସେହିପରି ଏକ ମହିମାକୁ ଅନୁଭବ କରି ପାରିଲେ ଓ ତାହାରି ସହିତ ଆପଣାର ଅସଲ ବ୍ୟାକୁଳତାଗୁଡ଼ିକର ସୂତ୍ର ଲଗାଇ ପାରିଲେ ଯାଇ ସାହାସୀ ପଥଚାରୀ କେବଳ ନିଜ ମୁକ୍ତି ଓ ନିଜ ଉଦ୍ଧାରର ଯାଚ୍ଞା କରିବାର ପ୍ରଲୋଭନରୁ ନିଜକୁ ମୁକୁଳାଇ ଆଣିପାରେ । ନିଜପାଇଁ ବରଂ ନର୍କକୁ ବରଣ କରିନିଏ, ମାତ୍ର ଜଗତର ଉଦ୍ଧାର ଇଚ୍ଛା କରେ । ଭୀମଭୋଇ ସେକଥା କରି ପାରିଥିଲେ ।

କବିବର ରାଧାନାଥ ରାୟ ସଂସ୍କୃତ ଛନ୍ଦରେ ଲିଖିତ ତାଙ୍କର 'ଭାରତ-ଗୀତିକା' ରେ ଉତ୍କଳକୁ ଭାରତରୂପକ ପଙ୍କଜର ଏକ ଦଳ ବୋଲି କଳ୍ପନା କରିଥିଲେ । ସେହି କୃତିଟିରେ ସିଏ ଉତ୍କଳକୁ ଗୋଟିଏ ମଣ୍ଡଳ ବୋଲି ବର୍ଣ୍ଣନା କରିଛନ୍ତି । ଆଗେ ଅଞ୍ଚଳ ଗୁଡ଼ିକୁ ବିଷୟ ବା ମଣ୍ଡଳ ବୋଲି କୁହାଯାଉଥିଲା । ଅନେକ ମଣ୍ଡଳ ମିଶି ଏକ ଦେଶ । ଏହାକୁ କେବଳ ଏକ ଭୌଗଳିକ ଅର୍ଥରେ ବୁଝିବାକୁ ଚେଷ୍ଟା କଲେ ଆମେ କଥାଟିର ସମ୍ପୂର୍ଣ୍ଣ ମର୍ମକୁ କଦାପି ହୃଦୟଙ୍ଗମ କରି ପାରିବାନାହିଁ । କେତେକ ମଣ୍ଡଳ ମିଶି ଗୋଟିଏ ଦେଶ ହୁଏ ବୋଲି ହୁଏତ ଭୂଗୋଳରେ କୁହା ଯାଇପାରେ । ଏପରିକି ରାଜନୀତିରେ ମଧ୍ୟ ବେଶ୍ କୁହା ଯାଇପାରେ । ମାତ୍ର, କେତୋଟି ସ୍ଥାନୀୟ ଅର୍ଥାତ୍ କ୍ଷୁଦ୍ର ପରମ୍ପରାକୁ ଏକାଠି ମିଶାଇ ଯେ କୌଣସି ବୃହତ୍ ପରମ୍ପରାକୁ ତିଆରି କରିଥାନ୍ତି, ସଂସ୍କୃତି ବିଜ୍ଞାନର କୌଣସି ଆଲୋଚନାରେ ଆଦୌ ସେପରି କୁହାଯାଇ ପାରିବନାହିଁ । ଏକ ବୃହତ୍ ପରମ୍ପରା ତାହାକୁ ଏକ ସମଗ୍ର ଅବୟବରୂପେ ଗଢ଼ିଥିବା କ୍ଷୁଦ୍ର ପରମ୍ପରା ମଧ୍ୟରେ ପ୍ରତିଫଳିତ ହୋଇ ରହିଥାଏ । ସ୍ଥାନୀୟ ବହୁବିଧ ବୈଚିତ୍ର୍ୟ ସତ୍ତ୍ୱେ କ୍ଷୁଦ୍ର ପରମ୍ପରା ଗୁଡ଼ିକ ନିଜ ନିଜର ଯଥାର୍ଥତମ ପରିଚୟ ତଥା ଭୂମିକାଗ୍ରହଣ ଗୁଡ଼ିକର କ୍ଷେତ୍ରରେ ମୁଖ୍ୟତଃ ସେହି ବୃହତ୍ ପରମ୍ପରାରୂପୀ ସମଗ୍ରଟିକୁ ହିଁ ଚହ୍ଲାଇ ଦେଉଥାନ୍ତି ଏହି ପରିପ୍ରେକ୍ଷୀରେ ବିଚାର କଲେ ଓଡ଼ିଶା ଭାରତବର୍ଷଠାରୁ ସ୍ୱତନ୍ତ୍ର ସତ, ମାତ୍ର ତଥାପି ଗୋଟାସୁଦ୍ଧା ସ୍ୱତନ୍ତ୍ର ନୁହେଁ । ଆମର ସ୍ଥାନୀୟ ଦିଅଁମାନେ ଆମଠାରୁ ଅବଶ୍ୟ ଏକ ସ୍ୱତନ୍ତ୍ର ଶ୍ରଦ୍ଧା ଓ ମମତାର ଦାବୀ କରନ୍ତି ସତ, ମାତ୍ର, ସେମାନଙ୍କୁ ଆମେ ଭାରତବର୍ଷରୂପୀ ବୃହତ୍ ପରମ୍ପରାଟିର ପ୍ରତିଫଳନକାରୀ ମାଧ୍ୟମରୂପେ ନଚିହ୍ନିବା ପର୍ଯ୍ୟନ୍ତ ସେମାନଙ୍କୁ ସୁସ୍ଥ ଭାବରେ ମୋଟେ ଚହ୍ନି ପାରିବାନାହିଁ । ଏହି ଭାରତ-ବର୍ଷରେ ଅନେକଗୁଡ଼ିଏ ମଣ୍ଡଳ ରହିଛି । ସେମାନେ ସମସ୍ତେ ସେହି ଏକ ବୃହତ୍-ପରମ୍ପରାର ସ୍ଥାନୀୟ ପ୍ରଖ୍ୟାପରୂପେ କାର୍ଯ୍ୟ କରୁଛନ୍ତି । ସେହି ଗୋଟିଏ ସମଗ୍ରର ପ୍ରାଣରଶ୍ମିକୁ ଆପଣାର ସ୍ଥାନୀୟ ବୈଚିତ୍ର୍ୟ ଏବଂ ବିଶେଷତ୍ୱ ମଧ୍ୟରେ ପୂରାଇ ରଖିଥିବା ଏହି ମଣ୍ଡଳଗୁଡ଼ିକ ପରସ୍ପର ସହିତ ମଧ୍ୟ ଅତ୍ୟନ୍ତ ଅନ୍ତରଙ୍ଗ ଭାବରେ ଛନ୍ଦା ହୋଇ ରହିଛନ୍ତି । ଏମାନେ ପରସ୍ପରଠାରୁ ଯେତେ ଦୂର ବୋଲି ଆମେ ନାନା ଅନ୍ୟ ତତ୍କାଳିକ ପ୍ରୟୋଜନରେ ପଡ଼ି ଭାବିବାଲାଗି ପ୍ରଲୁବ୍ଧ ହୋଇଥାଉ, ସେମାନେ ପ୍ରକୃତରେ ପରସ୍ପରଠାରୁ ଆଦୌ ସେତେ ବେଶୀ ଦୂର ନୁହନ୍ତି । କେତୋଟି ଦଳକୁ ଯେମିତି ମନ ସେମିତି ଆଣି ଏକାଠି ଯୋଡ଼ିଦେଲେ ତାହା

କଦାପି ଏକ ପଙ୍କଜରେ ପରିଣତ ହୋଇ ପାରନାହିଁ । ସମଗ୍ର ପଙ୍କଜଟିରେ ମଧ୍ୟ ଏପରି ଏକାଧିକ ପରିଚୟାତ୍ମକ ଗୁଣ ଓ ସ୍ୱଭାବ ରହିଛି, ଯେଉଁଟି ସକାଶେ ତାରି ଦଳଗୁଡ଼ିକ ପ୍ରକୃତରେ ଗୋଟିଏ ଗୋଟିଏ ପଙ୍କଜଦଳ ବୋଲି ପରିଚିତ ହୋଇପାରନ୍ତି । ତେଣୁ, ପ୍ରତ୍ୟେକ ଦଳର ଔଚିତ୍ୟନାଡ଼ିଟି କେବଳ ପଦ୍ମଫୁଲଟି ସହିତ ଲାଗିନାହିଁ, ତାହା ଅନ୍ୟାନ୍ୟ ଦଳଗୁଡ଼ିକ ସହିତ ଲାଗିକରି ରହିଛି । ଧର୍ମତଃ ସେହିପରି ଲାଗିରହିଛି ।

ଭାରତବର୍ଷର ସମଗ୍ର ସାଂସ୍କୃତିକ ମାନଚିତ୍ରରେ ଓଡ଼ିଶା ଯେପରି ଭାବରେ ଅବସ୍ଥିତ ରହିଛି, ସେହି ଅବସ୍ଥିତିର ମଧ୍ୟ ଏକ ସୁସ୍ପଷ୍ଟ ବିଶେଷତ୍ୱ ରହିଛି । ସେହି ବିଶେଷତ୍ୱ କେରଳର ନାହିଁ, କାଶ୍ମୀରର ନାହିଁ ଓ ଏପରିକି ଉତ୍ତର-ପ୍ରଦେଶର ମଧ୍ୟ ନାହିଁ । ବର୍ତ୍ତମାନର ଓଡ଼ିଶା ଉତ୍ତରରେ ଉତ୍ତରଭାରତକୁ ଲାଗିଛି, ଦକ୍ଷିଣରେ ଦକ୍ଷିଣଭାରତକୁ ଲାଗିଛି । କେବଳ ଭୌଗଳିକ ବା ପ୍ରାଶାସନିକ ଦୃଷ୍ଟିରୁ ଏକଥା ମୋଟେ କୁହାଯାଉନାହିଁ । ମୁଖ୍ୟତଃ ସାଂସ୍କୃତିକ ସ୍ୱରୂପଗତି ଦୃଷ୍ଟିରୁ ତାହା କୁହାଯାଉଛି । ଭାରତବର୍ଷର ପଶ୍ଚିମ ସମୁଦ୍ରତଟରେ ମହାରାଷ୍ଟ୍ରର ଯେଉଁ ଅବସ୍ଥିତି ଏପାଖେ ପୂର୍ବତଟରେ ଓଡ଼ିଶାର ମଧ୍ୟ ସେହି ଅବସ୍ଥିତି । ଭାରତୀୟ ଚତୁର୍ଧାମ ଭିତରୁ ପୂର୍ବଧାମଟି ଏହି ଓଡ଼ିଶାରେ ଅବସ୍ଥିତ ଥିବାରୁ ଏଠାକୁ ଏହି ଭୂମିରେ ପାରସ୍ପରିକ ପରିଚୟର ପ୍ରାୟ ପ୍ରଥମ ଶତାବ୍ଦୀଗୁଡ଼ିକରୁ ହିଁ ଉତ୍ତରରୁ ମଣିଷମାନେ ଆସିଛନ୍ତି, ଦକ୍ଷିଣରୁ ମଧ୍ୟ ମଣିଷମାନେ ଆସିଛନ୍ତି । ଅର୍ଥାତ୍, ଉତ୍ତର ଓ ଦକ୍ଷିଣ ଉଭୟ ସ୍ପର୍ଶ ଓଡ଼ିଶାରେ ଆସି ବାଜିଛି । ତେଣୁ, ଓଡ଼ିଶାକୁ ସମ୍ପୂର୍ଣ୍ଣ ଭାବରେ ଉତ୍ତରର ବୋଲି କୁହାଯାଇ ପାରିବନାହିଁ, ସମ୍ପୂର୍ଣ୍ଣ ଭାବରେ କେବଳ ଦକ୍ଷିଣର ବୋଲି କୁହାଯାଇ ପାରିବନାହିଁ । ଏବଂ, ଉତ୍ତର ଓ ଦକ୍ଷିଣ ଉଭୟେ ଆସି ଏଠାରେ ପରସ୍ପର ସହିତ ମିଳିତ ହୋଇଛନ୍ତି ବୋଲି କହିଲେ ମଧ୍ୟ ସମ୍ପୂର୍ଣ୍ଣ କଥାଟିକୁ ମୋଟେ କୁହାଯିବନାହିଁ । ଅଧିକ ସତ୍ୟକଥାଟି ହେଉଛି, ଏହି ପୂର୍ବପଟେ ଯାହାକିଛି ଉତ୍ତରରୁ ଦକ୍ଷିଣକୁ ଯାଇଛି ଓ ଯାହାକିଛି ଦକ୍ଷିଣରୁ ଉତ୍ତରକୁ ଆସିଛି, ତାହା ଏହି ଓଡ଼ିଶା ହୋଇ ଯାଇଛି । ଏହି ବିଶେଷ ଅବସ୍ଥିତି ଆମର ଏହି ଭୂମିଟିକୁ ଏକ ବିଶେଷ ଭାଗ୍ୟର ଅଧିକାରୀ କରାଇଛି, ତାହାକୁ ଏକ ବିଶେଷ ଭୂମିକା ପ୍ରଦାନ କରିଛି ଏବଂ ସେହି କାରଣରୁ ନାନା ବିଶେଷ ସମ୍ଭାବନା ଏବଂ ପ୍ରତିଶ୍ରୁତି ଦ୍ୱାରା ଧନାଢ଼୍ୟ କରି ରଖିଛି ।

ଓଡ଼ିଶା ଦକ୍ଷିଣ ଭାରତର ନୁହେଁ ଅଥବା ଉତ୍ତର ଭାରତର ନୁହେଁ, ଏପରି କହିବା ବେଳକୁ କଥାଟି ସତେଯେପରି ଅତ୍ୟନ୍ତ ନକାରାତ୍ମକ ହୋଇ ଶୁଭୁଛି । ଏଥିରେ ଏକ ସକାରାତ୍ମକ ଅଭିବ୍ୟଞ୍ଜନା ଦେଇ ଓଡ଼ିଶା ଉତ୍ତର ଭାରତ ଏବଂ ଦକ୍ଷିଣ ଭାରତ ମଧ୍ୟରେ ଏକ ସେତୁ ପରି ହୋଇ ରହିଛି ବୋଲି କୁହାଯାଇ ପାରିବ । ଉତ୍ତର ଭାରତ ଓ ଦକ୍ଷିଣ ଭାରତ ମଧ୍ୟରେ ଅତୀତରେ ବହୁ ଆଦାନ ପ୍ରଦାନ ଘଟିଛି, ବହୁ ସଂକ୍ରମଣ ଏବଂ ପ୍ରତିସଂକ୍ରମଣ ସମ୍ଭବ ହୋଇଛି । ସଂସ୍କୃତ ଭାଷାର ପୁନରୁଦ୍ଧାର କାଳରେ ସୂରୀମାନେ ଦକ୍ଷିଣ ଭାରତରୁ ହିଁ, ବାହାରିଛନ୍ତି । ଶାସ୍ତ୍ରର କହିବା ଅନୁସାରେ ଭାରତୀୟ ଭକ୍ତିମାର୍ଗ ଦକ୍ଷିଣ ଭାରତରୁ ହିଁ ଉତ୍ତର ଭାରତକୁ ଆସିଛି । ଏକଦା କୁହାଯାଇଛି ଯେ, ଭାରତୀୟ ସଂସ୍କୃତିର ସମଗ୍ର ଅବୟବଟିକୁ ଗଠନ କରିବାରେ ଉତ୍ତର ଭାରତ ପ୍ରଧାନତଃ ମସ୍ତିଷ୍କ ଯୋଗାଇ ଦେଇଛି ଏବଂ ଦକ୍ଷିଣ ଭାରତ ହୃଦୟଟିକୁ ଯୋଗାଇ ଦେଇଛି । ମସ୍ତିଷ୍କ ଓ ହୃଦୟ ମଧ୍ୟରୁ କେଉଁଟି ପ୍ରଧାନତର, ତାହାକୁ ନେଇ କେହି କଦାପି ବିବାଦ କରି ବାହାରିବ ନାହିଁ । ମସ୍ତିଷ୍କ ଓ ହୃଦୟ ଦୁହେଁ ଦୁହିଁଙ୍କର ପରିପୂରକ । ଅଧିକ ନିବିଡ଼ ଭାବରେ କହିଲେ ସମ୍ଭବତଃ ଦୁହେଁ ଦୁହିଁଙ୍କ ଲାଗି ଅନିବାର୍ଯ୍ୟ । ଦୁଇଟି ମଧ୍ୟରୁ ଯେ କୌଣସି ଗୋଟିଏ ପରିପୂର୍ଣ୍ଣତା ଏବଂ ପରିପକ୍ୱତା ଲାଭ କରିବାକୁ ହେଲେ ଅନ୍ୟଟିର ଅତ୍ୟାବଶ୍ୟକତା ସର୍ବଦା ରହିଛି । ସେହି ଦକ୍ଷିଣ ଭାରତରେ ହିଁ ଲେଖା ହୋଇଥିବା ଭକ୍ତିଶାସ୍ତ୍ର ସଂସ୍କୃତ ଭାଗବତରେ କୁହାଯାଇଛି ଯେ, ଜ୍ଞାନ ଓ ଭକ୍ତି ହେଉଛନ୍ତି କୌଣସି ଚଢ଼େଇର ଦୁଇଟିଯାକ ଡେଣା ପରି । କୌଣସି ଗୋଟିଏ ଡେଣାର ଅଭାବ ଥିଲେ ଯେପରି ଚଢ଼େଇ ଉଡ଼ିବାଲାଗି କଦାପି ସମର୍ଥ ହେବନାହିଁ, ସେହିପରି ଜ୍ଞାନ ଓ ଭକ୍ତି ଦୁଇଟି ମଧ୍ୟରୁ ଗୋଟିକର ଅଭାବ ରହି ଥିଲେ ଅନ୍ୟଟି ମଧ୍ୟ ସମ୍ଭବ ହେବନାହିଁ । ଓଡ଼ିଶାର ସନ୍ଥମାନେ ମଝିରେ ସେତୁ ପରି ହୋଇ ବିଶେଷ ଗୁରୁତ୍ୱ ଦେଇ ଯେ ଜ୍ଞାନମିଶ୍ରା ଭକ୍ତିର କଥା କହିଛନ୍ତି, ତାହାକୁ କ'ଣ କେବଳ ଏକ ଆକସ୍ମିକ ଘଟଣା ବୋଲି କୁହାଯିବ ?

ସେତୁ ଯୋଡ଼େ, ବ୍ୟବଧାନକୁ ଦୂର କରେ । ଉତ୍ତରର କୃଷ୍ଣ ପ୍ରେମଭକ୍ତି ଆସି ଯେତେବେଳେ ଓଡ଼ିଶାକୁ ସତେଅବା ବିହ୍ୱଳ କରି ବୁଡ଼ାଇ ଦେବାର ଉପକ୍ରମ କରୁଥିଲା ଏବଂ ଯେତେବେଳେ ରାଜା ମଧ୍ୟ ଗୋଟାସୁଦ୍ଧା ସେହି ଉତ୍ତେଜନା ଭିତରେ ପଶି ଯାଇଥିଲେ, ଷୋଡ଼ଶ ଶତାବ୍ଦୀର ସେହି ପ୍ରଥମ ଚରଣରେ ଓଡ଼ିଶାର

ସନ୍ଥମାନେ ଭକ୍ତି ସହିତ ଜ୍ଞାନକୁ ଆଣି ଯୋଡ଼ିଥିଲେ । ସେମାନେ ଶୁଷ୍କ ଅଦ୍ୱୈତ-ବାଦର ନିର୍ବସ୍ତୁ ତଥାକଥିତ ଜ୍ଞାନ ଓ ଶୁଷ୍କ ଦ୍ୱୈତବାଦର ନିର୍ବସ୍ତୁ ତଥାକଥିତ ଲୀଳାସାଧନାକୁ ଏକାଠି ଯୋଡ଼ିଥିଲେ । ଓଡ଼ିଶାର ସାଂସ୍କୃତିକ ଇତିହାସରୁ ଏହିପରି ଏକାଧିକ ନଜିର ଆଣି ଦିଆଯାଇ ପାରିବ । ଭାରତୀୟ ସାଂସ୍କୃତିକ ଭୂଗୋଳରେ ଓଡ଼ିଶାର ବିଶେଷ ଅବସ୍ଥିତି ହିଁ ଏହାକୁ ଏକ ବିଶେଷ ଭୂମିକା ସେତୁର ଓ ସମନ୍ୱୟକାରୀର ଭୂମିକା ଗ୍ରହଣ କରିବାରେ ବିଶେଷ ଭାବରେ ଗଠିତ କରି ଆଣିଛି । ଅତ୍ୟନ୍ତ ଅକୃପଣ ଭାବରେ ଓଡ଼ିଶା ଉତ୍ତର ଓ ଦକ୍ଷିଣ ଉଭୟ ପାର୍ଶ୍ୱକୁ ଗ୍ରହଣ କରିଛି ଓ ଉଭୟ ଦ୍ୱାରା ସ୍ୱୀକୃତ ମଧ୍ୟ ହୋଇଛି । ଏକ ଅଷ୍ଟ୍ରିକ୍ ମୂଳଭୂମି ଉପରେ ତାହା ଦ୍ରାବିଡ଼ ଓ ଆର୍ଯ୍ୟ ଦୁଇଟିଯାକ ଉପାଦାନକୁ ଏକାଠି ଗୋଳି ଯୁଗେ ଯୁଗେ ଏକ ମହନୀୟ ସୁଖସମାବେଶ ସମ୍ଭବ କରି ଆସିଛି । ଭାରତବର୍ଷର ଯୁଗ-ବିଧାତା ସତେଯେପରି ଓଡ଼ିଶା ନିମନ୍ତେ ଏହିପରି ଏକ ବିଶେଷ ଭୂମିକାକୁ ନିର୍ଦ୍ଦେଶିତ କରି ଆସିଛନ୍ତି । ସେହି ଭୂମିକାଟିକୁ ସଚେତନ ଭାବରେ ଗ୍ରହଣ କରିପାରିଥିବା ସମୟରେ ହିଁ ଓଡ଼ିଶା ଆପଣାର ନିୟତିଟିକୁ ଅଧିକ ସୂକ୍ଷ୍ମ ଓ ଅଧିକ ସମଗ୍ର ଭାବରେ ଅନୁଭବ କରିପାରିଛି । ଯେତେବେଳେ ସିଏ ତାହା କରି ନପାରିଛି, ସେତେବେଳେ ତାକୁ ନାନା କ୍ଷୋଭର ସମ୍ମୁଖୀନ ହେବାକୁ ପଡ଼ିଛି, ସେତେବେଳେ ଆପଣା ଆହ୍ୱାନଗୁଡ଼ିକର ମୂର୍ତ୍ତି ଦର୍ପଣଟି ଉପରେ ସିଏ ଆପଣାର ସ୍ୱରୂପ ଓ ସ୍ୱଭାବକୁ ତଥାପି ଠଉରାଇ ନେଇ ପାରିନାହିଁ । ତେଣୁ ଉତ୍ତର ଓ ଦକ୍ଷିଣ ଉଭୟଠାରୁ ହିଁ ଭାରି ବିଚ୍ଛିନ୍ନ ହୋଇ ରହିଯାଇଛି ।

ଓଡ଼ିଶା ଆମର, ଅର୍ଥାତ୍ ଏହି ନିୟତିଟି ହେଉଛି ଆମର; ଏହି ଆହ୍ୱାନଗୁଡ଼ିକ ଆମର । ଆମେ ସେହି ଆହ୍ୱାନଗୁଡ଼ିକର ସମ୍ମୁଖୀନ ହେବା । ଓଡ଼ିଶା ଏକ ଦ୍ୱୀପ ନୁହେଁ, ଏହା ଏକ ବିଚ୍ଛିନ୍ନ ଭୂଭାଗ ନୁହେଁ । ଓଡ଼ିଶା ଏକ ସେତୁ । ସବୁ ଯୁଗ ପରି ଆମର ଏଯୁଗରେ ମଧ୍ୟ ଓଡ଼ିଶାରେ ଥୋକେ ମଣିଷ ଅଛନ୍ତି, ଯେଉଁମାନେ କି ଏହି ଭୂମିକୁ ସତେଅବା ଗୋଟିଏ ଦ୍ୱୀପ ବୋଲି କଳ୍ପନା କରୁଛନ୍ତି । ସମଗ୍ର ପୃଥିବୀ ରସାତଳକୁ ଯାଉ ପଛକେ, ଆମ ଓଡ଼ିଶା ତଥାପି ରହିଥାଉ, ସେମାନେ ଭାରି ଉତ୍ସାହରେ ସତେଅବା ସେହିଭଳି ସ୍ୱପ୍ନମାନ ଦେଖୁଛନ୍ତି । ଓଡ଼ିଶାର ସାର୍ବଜନୀନ ନେତୃତ୍ୱର କ୍ଷେତ୍ରରେ ମଧ୍ୟ ସେହିପରି ଏକ ଏକଦର୍ଶୀ ଉନ୍ମାଦ ଓଡ଼ିଶାକୁ ବହୁତ କ୍ଷତିରେ ପକାଇଛି, ଭାରତୀୟ ମୁଖ୍ୟସ୍ରୋତ ଠାରୁ ଓଡ଼ିଶାକୁ ଅଲଗା କରି ରଖିବାର ବିବାଦ କରିଛି । ଚାରିପାଖରୁ ଆମର

ସବୁଯାକ ଡ଼ୋର କଟିଗଲେ ଆମେ ଏକା ଏହି ମୂଲକଟାକୁ ମନଇଚ୍ଛା ଭୋଗ କରି ପାରିବା, ଚତୁର୍ଦ୍ଦିଗରେ ଅନ୍ଧାର ଉପରେ ଅନ୍ଧାରକୁ ଜମା କରି ରଖିଥିଲେ ମଧ୍ୟ ସେତେବେଳେ ଆମର କେହି ଆଦୌ କଷ୍ଟ କରି ପାରିବେନାହିଁ, ସତେଅବା ଏହିପରି ଏକ ଦୁରଗ୍ରହ ସେହି ଉତ୍ସାହକୁ ଭାରି ଆକର୍ଷକ ଭାବରେ କାମୁଡ଼ି କରି ରଖିଛି । ଆଗକୁ ବାଟ ଛାଡ଼ି ଦେବାକୁ ମୋଟେ ରାଜି ହୋଇନାହିଁ । ମଣିଷ ପ୍ରମତ୍ତ ହେଲେ ଅଳପଟାକୁ ମଧ୍ୟ ବହୁତ ବୋଲି କହିଥାଏ । ବହୁତକୁ ମୋଟେ ମନ ବଳାଏ ନାହିଁ ।

ହଁ, ଓଡ଼ିଶା ଏକ ସେତୁ । ଆମେ ଏହାକୁ ଗୋଟିଏ ସେତୁ ପରି ମଜବୁତ କରି ଗଢ଼ିପାରିବା । ସେଥିଲାଗି ଯେଉଁ ନେତୃତ୍ୱ ଆବଶ୍ୟକ, ଓଡ଼ିଶା ବର୍ତ୍ତମାନ ସେହି ନେତୃତ୍ୱ ଲାଗି ଅପେକ୍ଷା କରି ରହିଛି । ସେହି ନେତୃତ୍ୱ ହିଁ ଆମର ଦୈନ୍ୟ ଦୂର କରିବ, ଆମର ଫର୍ଦ୍ଦିକାତରତା ଗୁଡ଼ିକୁ ଦୂର କରିବ, ଆମକୁ ଆମର ଏହି ଧରିତ୍ରୀର ସମ୍ପୂର୍ଣ୍ଣ ପରିଚୟଟିକୁ ଲାଭ କରିବା ନିମନ୍ତେ ଯୋଗ୍ୟ କରି ଆଣିବ । ଓଡ଼ିଶାରେ ବୁଦ୍ଧି ରହିଛି, ମନୁଷ୍ୟବଳ ରହିଛି, ପ୍ରାକୃତିକ ବହୁସମ୍ପଦର ବଳ ରହିଛି । ହୁଏତ ସେହି ନେତୃତ୍ୱର ଅଭାବ ରହିଛି । ନେତୃତ୍ୱ ଦେବା ଅର୍ଥାତ୍ ନିମିତ୍ତ ହେବା । ଆମ ଭିତରୁ ଯିଏ ସେହି ନିମିତ୍ତ ହୋଇପାରିବ, ସେଇ ଭବିଷ୍ୟବିଧାତାଙ୍କର ଆଶୀର୍ବାଦ ଲାଭ କରି ପାରିବ । ସେଇ ଫୁଲ ଫୁଟାଇବାକୁ ସମର୍ଥ ହେବ ।



# ଓଡ଼ିଶା ଓ ଭାରତବର୍ଷ

ଇଉରୋପୀୟମାନେ ପ୍ରଥମେ ବାଣିଜ୍ୟ-ବିସ୍ତାରର ଉଦ୍ଦେଶ୍ୟ ନେଇ ଭାରତବର୍ଷକୁ ଆସିଥିଲେ । ବାଣିଜ୍ୟ-ବିସ୍ତାରରୁ ଉପନିବେଶ-ସ୍ଥାପନର ହିଡ଼ିମାଡ଼ି ପର୍ବଟି ଆରମ୍ଭ ହୋଇଥିଲା । ଉପନିବେଶ-ସ୍ଥାପନର ତତ୍କାଳୀନ ପ୍ରତିଯୋଗିତାର ଶେଷରେ ଇଂରେଜମାନଙ୍କର ଜୟପତାକା ଉଡ଼ିଲା ଏବଂ ଅନ୍ୟମାନେ ନାନାଭାବେ ପରାସ୍ତ ହୋଇ ଓହରି ଯାଇଥିଲେ । ଭାରତକୁ ଏକ ଉପନିବେଶରେ ପରିଣତ କରିବାରେ ସେତେବେଳେ ଭାରତବର୍ଷର ପରିସ୍ଥିତି ମଧ୍ୟ ବହୁପରିମାଣରେ ସହାୟକ ହୋଇଥିଲା । ସେତେବେଳକୁ ମୋଗଲ ସମ୍ରାଜ୍ୟର ଅଣ୍ଟା ଭାଙ୍ଗି ସାରିଲାଣି ଦିଲ୍ଲୀର ମୂଳ ଦରବାରଟି ବହୁଭାଗ ହୋଇ ଲକ୍ଷ୍ନୌ, ଅଯୋଧ୍ୟା ଓ ଆହୁରି କେତେ ଖଣ୍ଡ-ଦରବାରରେ ପରିଣତ ହୋଇଗଲାଣି । ସେମାନଙ୍କର ଶକ୍ତିକୁ ଆହୁରି ଅଧିକ ନଷ୍ଟ କରିଦେବା ନିମନ୍ତେ ପ୍ରାୟ ଗୋଟିଏ ଗୋଟିଏ ସ୍ଥାନୀୟ ଜାତୀୟ ଜାଗରଣର ଆବେଶ ସୃଷ୍ଟି କରି ଶିଖ, ରାଜପୁତ ଏବଂ ମରାଠାମାନଙ୍କର ଉପଶକ୍ତି ଗୁଡ଼ିକ ମୁଣ୍ଡ ଟେକିଲେଣି । ଦକ୍ଷିଣରେ ମହୀଶୁର ଏବଂ ପୂର୍ବରେ ବଙ୍ଗଦେଶରେ ଦୁଇଟି ମୁସଲମାନ ବଂଶ ଆପଣାର ଗୋଟିଏ ଗୋଟିଏ କ୍ଷୁଦ୍ର ସାମ୍ରାଜ୍ୟକୁ ଯଥାସମ୍ଭବ ଅଧିକ ବିସ୍ତାରିତ କରିବାରେ ବେଶ୍ ବ୍ୟସ୍ତ ଅଛନ୍ତି । ସେତେବେଳେ ଅରାଜକତା ହିଁ ସର୍ବପ୍ରଧାନ ଅବ୍ୟାଖ୍ୟା ରୂପେ ଆବିର୍ଭୂତ ହୋଇଛି । ହୃତଗୌରବ ରାଜା ଓ ନବାବମାନେ ସେତେବେଳେ ରାଜତ୍ୱ କରୁନାହାନ୍ତି, ଲୁଣ୍ଠନ ହିଁ କରୁଛନ୍ତି । କହିବା ବାହୁଲ୍ୟ ଯେ ଏହିସବୁ ଯାବତୀୟ କ୍ରୂର ଦୁଷ୍ଟ ଶାସନର ପରିପ୍ରେକ୍ଷୀରେ ଭାରତରେ ଅନେକ ବ୍ୟକ୍ତି ସେତେବେଳେ ଇଂରେଜ ସାମ୍ରାଜ୍ୟର ସ୍ଥାପନାକୁ ଈଶ୍ୱରଙ୍କର ଏକ ଆଶୀର୍ବାଦ ପରି ମାନି ନେଇଥିଲେ ।

ଓଡ଼ିଶାର ଶେଷ ଓଡ଼ିଆ ରାଜା ଷୋଡ଼ଶ ଖ୍ରୀଷ୍ଟାବ୍ଦରେ ମୁସଲମାନ ମାନଙ୍କ ହାତ ପରାସ୍ତ ହୋଇଥିଲେ । ତାପରେ ବେଶ୍ କେତେ ଶତାବ୍ଦୀ ପରେ ମରାଠାମାନେ ସେମାନଙ୍କ ହାତରୁ ଓଡ଼ିଶାକୁ ନେଲେ । ସେତେବେଳେ ଓଡ଼ିଶା ଆଉ ଅଖଣ୍ଡ ଗୋଟିଏ ହୋଇ ନଥିଲା । ଗଡ଼ଜାତର ରାଜାମାନେ ନିଜନିଜର ଗଡ଼ଜାତରେ ପ୍ରାୟ ନିରଙ୍କୁଶ ଚକ୍ରବର୍ତ୍ତୀ ହୋଇ ରହିଥିଲେ, ନିରଙ୍କୁଶ ଅନ୍ଧାର ଭିତରେ ରାଜ୍ୟର

ପ୍ରଜାମାନଙ୍କୁ ଶୋଷଣ କରୁଥିଲେ । ତତ୍କାଳୀନ ଓଡ଼ିଶାର ଚବିଶି ଗଡ଼ଜାତର ଇତିହାସକୁ ଅନୁଧ୍ୟାନ କରି ଦେଖିଲେ ଜଣାଯାଉଛି ଯେ ସେଗୁଡ଼ିକ ମଧ୍ୟରୁ ଶାସନକାରୀ ଅଧିକାଂଶ ରାଜବଂଶ ବାହାରୁ ଆଗନ୍ତୁକ ଭାବରେ ଆସିଛନ୍ତି, ସ୍ଥାନୀୟ ଶାସନଟିକୁ ଅପହରଣ କରି ନିଜେ ସିଂହାସନାରୂଢ଼ ହୋଇଛନ୍ତି । ଅର୍ଥାତ୍, ଏମାନଙ୍କର ଚେର ଯଥେଷ୍ଟ ପରିମାଣରେ ମାଟି ଭିତରକୁ ଭେଦ କରିନାହିଁ ଓ ତଦ୍ଦ୍ୱାରା ସେମାନେ ଆହୁରି ଅଧିକ ନିରଙ୍କୁଶ ହେବାକୁ ଉତ୍ସାହ ମଧ୍ୟ ପାଇଛନ୍ତି । ମରାଠାମାନଙ୍କୁ ଓଡ଼ିଆ ଚଳନ୍ତି ଭାଷାରେ ବର୍ଗୀ ବୋଲି କୁହାଯାଇଛି । ବର୍ଗୀମାନଙ୍କ ଅତ୍ୟାଚାର ଓଡ଼ିଶାର ସେହି ଅରାଜକତାମୟ ଯୁଗପର୍ଯ୍ୟାୟଟିରେ ପ୍ରାୟ ଏକ ଗାଥା ପରି ହୋଇରହିଛି । ସେତେବେଳେ ଯେଉଁ ରାଜା ଓ ଶାସକମାନେ ନିଜର ସାନସାନ ରାଜ୍ୟ ବା ମାହାଲରେ ଚକ୍ରବର୍ତ୍ତୀମାନଙ୍କ ପରି ମୁଖ୍ୟତଃ ଭୟ ବିସ୍ତାର କରି ରହିଥିଲେ, ସେମାନେ ଯେଉଁ ନୂତନ ସାମ୍ରାଜ୍ୟବାଦ ପୃଥିବୀର ସେପଟରୁ ଆସି ଭାରତବର୍ଷରେ ମାଡ଼ି ଯାଉଥିଲା, ସେମାନେ ସେଇଟି ବିଷୟରେ ପ୍ରକୃତରେ କେତେ କମ୍ ସଚେତନ ରହିଥିଲେ ।

ମରାଠାମାନଙ୍କ ଠାରୁ ଯେତେବେଳେ ଇଂରାଜମାନେ ଓଡ଼ିଶାକୁ ଜାଗିରି ସ୍ୱରୂପ ପାଇଲେ, ସେତେବେଳେ ଓଡ଼ିଶାର ପରିସ୍ଥିତି ସମ୍ବନ୍ଧରେ ଆଗ୍ରହୀ କୌଣସିହେଲେ ରହିଥିବା ପ୍ରାୟ ସମସ୍ତେ ସ୍ୱସ୍ତିର ନିଶ୍ୱାସ ପକାଇଥିଲେ । ତତ୍କାଳୀନ ସାହିତ୍ୟରୁ ତାହାର ଏକାଧିକ ପ୍ରମାଣ ମିଳିଥାଏ । ଇଂରାଜମାନଙ୍କର ଓଡ଼ିଶା ଦଖଲକୁ ସେମାନେ ଈଶ୍ୱରଙ୍କର ଅନୁଗ୍ରହ ବୋଲି ଗ୍ରହଣ କରିଥିଲେ । ଓଡ଼ିଶା ତାପରେ ଯେଉଁ ବଙ୍ଗପ୍ରଦେଶ ସହିତ ଯାଇ ଯୋଡ଼ାହେଲା, ସେଠାରେ ମଧ୍ୟ ଠିକ୍ ସେହିଭଳି ପ୍ରତିକ୍ରିୟା ହୋଇଥିଲା । ସେତେବେଳେ ଭାରତବର୍ଷରେ ପ୍ରାୟ ସବୁ ଅଞ୍ଚଳ ଓ ଖଣ୍ଡରେ ଯେଉଁ ଚକ୍ଷୁହୀନ ଓ ଅରାଜକ ଦୁଷ୍ଟ ଶାସନ ଲାଗି ରହିଥିଲା, ବିବେକୀମାନେ ଇଂରାଜ-ଶାସନକୁ ତାହା ତୁଳନାରେ ବହୁଗୁଣରେ ଅଧିକ ମଙ୍ଗଳମୟ ବୋଲି ବିଚାର କରିଥିଲେ । ରାଜା ରାମମୋହନ ରାୟ ସେହି ସମୟରେ ଲେଖିଥିଲେ, "ଶେଷରେ ଜଗତ୍ରକ୍ଷକ ପରମେଶ୍ୱରଙ୍କର କୃପା ହେଲା ଓ ସେ ଅତ୍ୟନ୍ତ ଦୟା-ପରବଶ ହୋଇ ଇଂରାଜଜାତିକୁ ଅତ୍ୟାଚାରିତ ବଙ୍ଗବାସୀମାନଙ୍କୁ ଆପଣାର ସୁରକ୍ଷା ମଧ୍ୟକୁ ଗ୍ରହଣ କରିନେବା ଲାଗି ପ୍ରେରିତ କଲେ ।" ବଙ୍ଗଦେଶର କଲିକତାରେ ହିଁ ତତ୍କାଳୀନ ଶାସକ ଇଷ୍ଟ ଇଣ୍ଡିଆ କମ୍ପାନୀର ମୁଖ୍ୟକେନ୍ଦ୍ର ଥିଲା । ରାଜା ରାମମୋହନ ମଧ୍ୟ ଏକାଧିକ ଦୃଷ୍ଟିରୁ ଇଉରୋପୀୟ ପ୍ରାଣସ୍ୱଭାବଟି ସହିତ ଅପେକ୍ଷାକୃତ ଅଧିକ

ପରିଚିତ ଥିଲେ । ସିଏ କେବଳ ଇଂରାଜମାନଙ୍କର ଏହି ଦେଶରେ ଗଣ୍ଡିକୁ ଗଣ୍ଡି ଗଡ଼ି ଉଠୁଥିବା ଶାସନ ଓ ପରାକ୍ରମକୁ ହିଁ ଦେଖୁନଥିଲେ। ଏଇଠିର ଆହୁରି ପଛକୁ ଦୃଷ୍ଟି ଭେଦାଇ ସିଏ ଇଉରୋପୀୟ ସଂସ୍କୃତି ଏବଂ ତାହା ସହିତ ଏଣିକି ଅଧିକରୁ ଅଧିକ ପରିମାଣରେ ଘଟିବାକୁ ଯାଉଥିବା ଭାରତର ସମ୍ପର୍କଟିକୁ ହୁଏତ ଦେଖି ପାରୁଥିଲେ । ସିଏ ଏକ ବୃହତ୍ ସନ୍ଦର୍ଭରେ କଥା ଚିନ୍ତା କରୁଥିଲେ ।

ପ୍ରଧାନତଃ ଅବସ୍ଥିତିଗତ ଏକ ଆକସ୍ମିକତା ହେତୁ ବଙ୍ଗପ୍ରଦେଶ ହିଁ ଉକ୍ତ ଇଉରୋପୀୟ ସମ୍ଭବ ଆଡ଼କୁ ଏକ ନୂଆଁତର ଗ୍ରହଣଶୀଳତା ପ୍ରକଟ କରିପାରିଥିଲେ ସେତେବେଳେ ଇଷ୍ଟ ଇଣ୍ଡିଆ କମ୍ପାନୀ ଓଡ଼ିଶାକୁ ସେହି ବଙ୍ଗପ୍ରଦେଶର ଲାଞ୍ଜରେ ବାନ୍ଧିକରି ରଖିଥିଲେ । କମ୍ପାନୀ ତରଫରୁ ଇଂରେଜୀ ଭାଷାରେ ତାଲିମ ପାଇଥିବା ବଙ୍ଗବାସୀମାନେ ହିଁ ପ୍ରତିନିଧିରୂପେ ଓଡ଼ିଶାର ଶାସନ କରୁଥିଲେ । ମାଲିକଙ୍କ ପ୍ରତିନିଧିମାନେ ହିଁ ସାଧାରଣତଃ ସାମନ୍ତବାଦୀ ଶାସନଗଢ଼ଣି ଭିତରେ ମାଲିକମାନଙ୍କ ଠାରୁ ଅଧିକ ଉଗ୍ର ହୋଇଥାନ୍ତି । ତତ୍କାଳୀନ ଓଡ଼ିଶାରେ ଏହି ମଧ୍ୟବର୍ତ୍ତୀ ମାଲିକମାନଙ୍କର ମଧ୍ୟ ଏକ ଅନୁରୂପ ଇତିହାସ ରହିଛି । ସେମାନଙ୍କ ମଧ୍ୟରୁ ହିଁ କେତେଜଣ ଆପଣାର ସାମର୍ଥ୍ୟକୁ ଯଥେଷ୍ଟ ଚାତୁରତାର ସହିତ ଖଟାଇ ଇଂରେଜ ଅମଳରେ ଓଡ଼ିଶାର କେତେକ ଅଞ୍ଚଳରେ ସ୍ୱୟଂ ଜମିଦାର ହୋଇ ପାରିଥିଲେ । ଓଡ଼ିଆମାନେ ସେମାନଙ୍କର ପ୍ରଜା ହୋଇ ରହିଲେ ସେମାନଙ୍କ ମାଧ୍ୟମରେ ଇଂରେଜମାନଙ୍କର ପ୍ରଜା ହୋଇ ରହିଥିଲେ । ଅନେକ ସ୍ଥଳରେ ନିଜକୁ ହୁଏତ ଏକ ଦ୍ୱିତୀୟ ଶ୍ରେଣୀର ପ୍ରଜା ବୋଲି ହିଁ ଭାବୁଥିଲେ । ସେହି ବଙ୍ଗବାସୀ ମାନଙ୍କର ଜରିଆରେ ହିଁ ଓଡ଼ିଶାବାସୀଙ୍କର ଇଂରାଜୀ ସଂସ୍କୃତି ସହିତ ମୁଖ୍ୟତର ଭାବରେ ଏକ ସମ୍ପର୍କ ଘଟିଥିଲା । ସେତେବେଳେ ବଙ୍ଗଳାରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଯୁଗ, ରାମମୋହନ ଏବଂ କେଶବଚନ୍ଦ୍ରଙ୍କ ଯୁଗ । ହାଜୀ ମହମ୍ମଦ୍ ମହସିନ ଓ ରାମତନୁ ଲାହିଡ଼ିଙ୍କର ଯୁଗ । ସେହି ଯୁଗର ନୂତନ ଆଘାତ ଓ ପ୍ରେରଣାମାନ ପ୍ରଧାନତଃ ପରୋକ୍ଷ ଭାବରେ ଓଡ଼ିଶାର ଉପକୂଳବର୍ତ୍ତୀ ଗୋଟିଏ ଦୁଇଟି ସାନ ସହରରେ ଆସି ବାଜୁଥିଲା । ଉପକୂଳବାସୀ ଅନେକଙ୍କ ଲାଗି ଓଡ଼ିଶା କହିଲେ ଅନେକ ସମୟରେ ସେତିକିକୁ ହିଁ ବୁଝାଉଥିଲା । ଗଡ଼ଜାତର ରାଜାମାନେ ବ୍ରିଟିଶ୍ କର୍ତ୍ତୃତ୍ୱର ବିଶେଷ ସୁରକ୍ଷାରେ ରହିଥିଲେ । ଦକ୍ଷିଣ ଓଡ଼ିଶା ମାନ୍ଦ୍ରାଜ ପ୍ରେସିଡେନ୍ସୀର ବୃହତ୍ତମ ଜିଲ୍ଲା ଭିଶାଖାପାଟନାର ଅନ୍ତର୍ଗତ ହୋଇ ରହିଥିଲା । ଏତେ ବଡ ଜିଲ୍ଲାର ଏକ ଦୂର ଉପାନ୍ତରେ ରହିଥିବାରୁ ଏଯାଏ କୌଣସି ପ୍ରକାରର ଆଲୁଅ ଆସି ପହଞ୍ଚିବା ମଧ୍ୟ ଅତ୍ୟନ୍ତ

ଦୁରୂହ ଥିଲା । ସେହି ଅଞ୍ଚଳର କୁନ ରଜା ଓ ଜମିଦାରମାନେ ମଧ୍ୟ ସେହି ଦୁରୂହତାକୁ ଆହୁରି ବଢ଼ାଇ ଦେବାରେ ସାହାଯ୍ୟ କରୁଥିଲେ । ତେଣେ ସମ୍ବଲପୁର ଖଣ୍ଡଟା ଖାସମାହାଲ ଥିଲା ଏବଂ ସୁଦୂର ନାଗପୁରଠାରୁ ତାହାର ଶାସନ ହେଉଥିଲା । ସେତେବେଳେ ଓଡ଼ିଶା କେଉଁଠି ଥିଲା ?

ପ୍ରାଚ୍ୟ ବା ଭାରତବର୍ଷ ପାଖରେ ଯାହା ନଥିଲା, ସେତେବେଳେ ପଶ୍ଚାତ୍ୟର ଖାସ୍ ତାହାହିଁ ରହିଥିଲା ବୋଲି ପ୍ରଚାର ହୋଇଥିଲା । ପଶ୍ଚାତ୍ୟ ପାଖରେ ଜ୍ଞାନ ଥିଲା, ବିଜ୍ଞାନ ଥିଲା, ପୃଥିବୀସାରା ସେମାନଙ୍କର ସାମ୍ରାଜ୍ୟ ରହିଥିଲା ଓ ଆଧୁନିକ ସଭ୍ୟତା କହିଲେ ସେହି ପାଶ୍ଚାତ୍ୟକୁ ହିଁ ବୁଝାଉଥିଲା । ଏଠି ଭାରତରେ ଯେଉଁମାନେ ପାଶ୍ଚାତ୍ୟର ସେହିସବୁ ଅବେଦନ ଦ୍ୱାରା ଉଦ୍‌ବୁଦ୍ଧ ହେଲେ, ସେମାନେ ତାହାର ସେହି ନୂତନ ପ୍ରାଣପବନ ଗୁଡ଼ିକୁ ଗ୍ରହଣ କରିନେଇ ପାରିଲେ ଯାଇ ଭାରତର ଉଦ୍ଧାର ବା ନିଦ୍ରାଭଙ୍ଗ ହେବ ବୋଲି ଭାବିବାକୁ ଆରମ୍ଭ କଲେ । ପାଶ୍ଚାତ୍ୟର ଆବିଷ୍କାର ଭାରତବର୍ଷର ଅଜ୍ଞାତ ଭିତରେ ରହିଥିବା ସ୍ଥାୟୀ ରତ୍ନଗୁଡ଼ିକୁ ଆବିଷ୍କାର କରିବାଲାଗି ମଧ୍ୟ ଉଦ୍‌ବୋଧନ ଦେଲା । ଏକାବେଳେକେ ଦୁଇଟିଯାକ କଥା ଘଟିଲା : ବାହାର ଆଡ଼କୁ ଗବାକ୍ଷଗୁଡ଼ିକ ଖୋଲିଗଲା ଏବଂ ଏଣେ ଏକ ନୂତନ ଗୌରବବୋଧ ତଥା ଗର୍ବିତତା ହେଇ ନିଜକୁ ଚିହ୍ନିବାଲାଗି ମଧ୍ୟ ଅବସର ମିଳିଥିଲା ଭାରତବର୍ଷରେ ଆଧୁନିକ ଉଦ୍‌ବେଳନ ଗୁଡ଼ିକର ମୂଳଦୁଆ ପଡ଼ିଲା ।

ସେତେବେଳକୁ ଓଡ଼ିଶାରେ ଦୁଇ ତିନୋଟି ଇଂରାଜୀ ସ୍କୁଲ ଆରମ୍ଭ ହୋଇ ଗଲାଣି । ଥିଲା ଘରର ପିଲାମାନେ କଲିକତା ପର୍ଯ୍ୟନ୍ତ ଯାଇ ଏଫ୍. ଏ; ବି.ଏ. ପ୍ରଭୃତି ଉଚ୍ଚ ପାଠ ପଢ଼ି ଇଂରେଜମାନଙ୍କର ଦପ୍ତରରେ ବଡ଼ ହାକିମ ହେବାକୁ ମଧ୍ୟ ମନ କଲେଣି । ରକ୍ଷଣଶୀଳମାନେ ତାହାର ପ୍ରତିରୋଧମାନ କରିବାକୁ ଆରମ୍ଭ କଲେଣି । ନୂଆର ପ୍ରତିରୋଧ କଲେ ତଥାପି ତାକୁ ପାରି ହେବନାହିଁ ବୋଲି ଉତ୍ତମ ରୂପେ ଜାଣିଥିଲେ ମଧ୍ୟ ପୁରୁଣା ସତେ ଅବା ସ୍ୱସଂସ୍କାରବଶତଃ ତାହାର ପ୍ରତିରୋଧ କରୁଛି । ସେତେବେଳେ ଓଡ଼ିଶାର ପୁରୋଗାମୀ ସମ୍ବାଦପତ୍ର 'ଉତ୍କଳ-ଦୀପିକା' ଜନ୍ମ ଲାଭ କଲା । ତରୁଣ ଶ୍ରୀ ପ୍ୟାରୀମୋହନ ଆଚାର୍ଯ୍ୟ 'ଉତ୍କଳ ପୁତ୍ର' ବାହାର କଲେ । ସେତିକବେଳେ ଓଡ଼ିଶାର ସର୍ବୋଚ୍ଚ ଭବିଷ୍ୟଦ୍ଦୃଷ୍ଟି ସମ୍ଭବତଃ ତାଙ୍କର ଲେଖାରୁ ହିଁ ବ୍ୟକ୍ତ ହେଉଥିଲା । ପ୍ୟାରୀମୋହନ ତାଙ୍କର ନିରନ୍ତର ସଙ୍ଘର୍ଷରତ ଅଥଚ 'ପୁରୋଦୃଷ୍ଟି-ସମୁଜ୍ଜ୍ୱଳ ସ୍ୱଳ୍ପ ଜୀବନକାଳ ମଧ୍ୟରେ

ଅଗକୁ ଅନାଇ ଯେତକ ଦୂରକୁ ଦେଖି ପାରୁଥିଲେ ଓ ତାହାକୁ ବାସ୍ତବ ରୂପ ଦେବାକୁ ଯାଇ ଯେତକ କରି ପାରିଥିଲେ, ସେକଥା ଭାବଲେ ବର୍ତ୍ତମାନ ମଧ୍ୟ ବିସ୍ମିତ ହେବାକୁ ପଡ଼େ । ସିଏ ଏକାଧାରରେ ଉଦ୍ୟମ ଓ ସାହସର ପ୍ରତୀକ ଥିଲେ । ଗୋଟିଏ ପ୍ରସଙ୍ଗରେ ସେ ଲେଖିଛନ୍ତି : "ଯାହା ମନୁଷ୍ୟ କରିଅଛି, ତାହା ଅବଶ୍ୟ ମନୁଷ୍ୟ କରିପାରିବ । ଦିନକେ ନହେବ, ସହସ୍ର ଦିନେ ହେବ । ସହସ୍ର ଦିନେ ନହୁଏ, ସହସ୍ର ବର୍ଷରେ ହେବ, ଯତ୍ନ କଲେ ଅବଶ୍ୟ ହେବ ।" ଭାଗ୍ୟବାଦୀ ତତ୍କାଳୀନ ଓଡ଼ିଶାରେ ଏହି କଥା ଗୁଡ଼ିକ ସେତେବେଳେ ସତେଅବା ଶାପମୋଚନକାରୀ ହରିନାମ ଭଳି ଶୁଭୁଥିବ । ଓଡ଼ିଆ ସାହିତ୍ୟରେ ମଧ୍ୟ ଏକ ନୂତନ ଉତ୍ତରଣର ଯୁଗ ଆସୁଛି ବୋଲି ମଧୁସୂଦନ ଅନୁଭବ କରିଥିଲେ । ସେ ଶିକ୍ଷାର ଏକ ନୂତନ ସଜ୍ଞା ନିର୍ଣ୍ଣୟ କରିଥିଲେ । ପରିସ୍ଥିତି ଦ୍ୱାରା ଯେତେ ବିଚ୍ଛିନ୍ନ ଓ ସ୍ୱଳ୍ପ ପରିଧି ହୋଇ ରହିଥିଲେ ମଧ୍ୟ ଓଡ଼ିଶା ଯେ ବୃହତ୍ତର ଭାରତବର୍ଷ ମଧ୍ୟରେ ଅବସ୍ଥିତ ରହିଥିଲା, ସମସାମୟିକ ଅନ୍ୟ ସମସ୍ତଙ୍କ ତୁଳନାରେ ମଧୁସୂଦନ ସେହି ବିଷୟରେ ସମ୍ଭବତଃ ସବୁଠାରୁ ଅଧିକ ସଚେତନ ଥିଲେ । ସିଏ ଓଡ଼ିଶାକୁ ଭାରତୀୟ ମହାସ୍ରୋତ ମଧ୍ୟରେ ହିଁ ଏକ ଅଙ୍ଗ ରୂପେ ଦେଖି ପାରୁଥିଲେ ଏବଂ ସେହିପରି ଦେଖିବାକୁ ହିଁ ଯଥାର୍ଥ ଦେଖିବା ବୋଲି ଅନୁଭବ କରୁଥିଲେ ।

ଏହି ଶତାବ୍ଦୀର ଆରମ୍ଭ ବେଳକୁ ଭାରତୀୟ ଜାତୀୟ କଂଗ୍ରେସ ନିଜର ଶୈଶବ ସ୍ତର ବାହାରି ଆସିଲଣି । ବଙ୍ଗ-ବିଚ୍ଛେଦ-ବିରୋଧୀ ଆନ୍ଦୋଳନ ପରେ ସେହି ଗୋଟିଏ ସଂସ୍ଥା ଭିତରେ ମଧ୍ୟ ଚରମପନ୍ଥୀ ଓ ନରମପନ୍ଥୀଙ୍କ ମଧ୍ୟରେ ସଂଗ୍ରାମର ପନ୍ଥା ନେଇ ବିବାଦ ହେଲଣି । ଭାରତକୁ ଇଂରେଜମାନଙ୍କ ହାତରୁ ମୁକ୍ତ କରିବାଲାଗି ଦଳେ ସନ୍ତ୍ରାସବାଦର ଆଶ୍ରୟ ମଧ୍ୟ ନେଲେଣି । ଓଡ଼ିଶାରେ ସତେଅବା ତାହାର ଆଦୌ କୌଣସି ଖବର ପହଞ୍ଚୁନାହିଁ । ଓଡ଼ିଶାରେ ସାଧାରଣ ରାଜନୀତିର ସ୍ତରରେ ଯାହାକିଛି ହେଉଛି, ତାହା ସତେଯେପରି ଅତ୍ୟନ୍ତ ଏକୁଟିଆ ଭାବରେ ହେଉଛି । ବାହାର ସହିତ ସତେଅବା କୌଣସି ସମ୍ପର୍କ ନାହିଁ । ୧୯୦୪ ମସିହାରେ ଯେତେବେଳେ ଏସିଆର ଜାପାନ ଦେଶ ଇଉରୋପର ଅନ୍ତକାୟ ରୁଷିଆକୁ ପରାସ୍ତ କରିଥିଲା, ସେତେବେଳେ ତାହା ଭାରତର ସ୍ୱାଧୀନତାକାମୀମାନଙ୍କୁ କେତେ ଉତ୍ସାହ ଓ ବଳ ଆଣି ଦେଇଥିଲା, କେତେ ଆଶାର ସଞ୍ଚାର କରିଥିଲା । ଓଡ଼ିଶାରେ ସେହି ସମ୍ବାଦଟି ସତେଅବା ଆଦୌ ପହଞ୍ଚି ନଥିବା ପରି

ମନେ ହୋଇଥାଏ । ରୁଷ-ଜାପାନ ଯୁଦ୍ଧ ବିଷୟରେ ଫକୀରମୋହନ କବିତାଟିଏ ଲେଖିଥିଲେ ସତ, ମାତ୍ର ତାହାକୁ ସେ ସମ୍ପୂର୍ଣ୍ଣ ଅନ୍ୟ ସନ୍ଦର୍ଭରେ ଲେଖିଥିଲେ । ସେତେବେଳେ ଓଡ଼ିଶାର ଏକମାତ୍ର ଉଲ୍ଲେଖଯୋଗ୍ୟ ରାଜନୀତିକ ମଞ୍ଚ ହେଉଛି ଉତ୍କଳ ସମ୍ମିଳନୀ । ଭାରତର ଭାଗ୍ୟ ଯାହାହେଉ ପଛକେ, ଓଡିଶାର ଭାଗ୍ୟ ଅର୍ଥାତ୍ ତଥାକଥିତ ସ୍ୱାର୍ଥ ଯେପରି ସୁରକ୍ଷିତ ହୋଇ ରହିବ, ଉତ୍କଳ-ସମ୍ମିଳନୀ ଆପଣାର ଯାବତୀୟ ସକ୍ରିୟତାର ପରିସରଗୁଡ଼ିକୁ କେବଳ ସେତିକି ମଧ୍ୟରେ ସୀମାବଦ୍ଧ କରି ରଖିଥିଲା । ଭାରତରେ ଅଦୂର ଓ ଦୂର ଭବିଷ୍ୟତରେ କ'ଣ ସବୁ ଘଟିବାକୁ ଯାଉଛି, ଏହି ସଂସ୍ଥା ସେ ଗୁଡ଼ିକୁ ସତେଅବା ମୋଟେ ଘ୍ରାଣ କରି ପାରୁନଥିଲା । ରାଜନୀତିକ ଭବିଷ୍ୟ-ଚେତନା ଏପରି ଦୟନୀୟ ଭାବରେ ଦୈନ୍ୟଗ୍ରସ୍ତ ହୋଇ ରହିଥିବା ସମୟରେ ସମ୍ମିଳନୀ ଠାରୁ ରାଜନୀତିକ ବର୍ତ୍ତମାନ-ଚେତନାର କ୍ଷେତ୍ରରେ ବା ଆଉ କ'ଣ ଆଶା କରାଯାଇ ପାରିଥାନ୍ତା ?

ଉତ୍କଳ ଗୌରବ ମଧୁସୂଦନ ଦାସ ସେତେବେଳେ ଓଡ଼ିଶାରେ ଯାବତୀୟ ନେତୃତ୍ୱର ସର୍ବାଗ୍ରରେ ରହିଥିଲେ । ଓଡିଶାକୁ ସମୃଦ୍ଧିଶାଳୀ ଭାବରେ ଦେଖିବା ହିଁ ହୁଏତ ତାଙ୍କ ଜୀବନର ଏକମାତ୍ର ସ୍ୱପ୍ନ ଓ ଏକମାତ୍ର ବ୍ୟାକୁଳତା ହୋଇ ରହିଥିଲା । କୃଷି, ଶିଳ୍ପ ଓ ଶିକ୍ଷା ସମ୍ବନ୍ଧରେ ତାଙ୍କର ସେହି ସମୟର ବକ୍ତୃତା ଗୁଡ଼ିକୁ ଏବେ ମଧ୍ୟ ଗୋଟିଏ ଗୋଟିଏ ଆଧୁନିକ ବକ୍ତୃତା ବୋଲି କୁହାଯିବ । ଓଡିଶା ବିଷୟରେ ତାଙ୍କର ଏକ ଅପ୍ରତିହତ ସ୍ୱାଭିମାନ ରହିଥିଲା । ପ୍ରତିବେଶୀ ଅନ୍ୟ ପ୍ରଦେଶ ଗୁଡିକ ସହିତ ଓଡ଼ିଶାକୁ ମୂର୍ତ୍ତି ସମକକ୍ଷ କରି ଗଠନ କରିବା ନିମନ୍ତେ ସତେଯେପରି ଜଣେ କୁଶଳ ଯନ୍ତ୍ରୀ ପରି ସିଏ ନକ୍‌ସା ପ୍ରସ୍ତୁତ କରି ରଖିଥିଲେ ଓ ସେଥିଲାଗି ଏକ ସମୁଚିତ ସାମୂହିକତା ସୃଷ୍ଟି କରିବା ନିମନ୍ତେ ସେ ସଂପୃକ୍ତ ସମସ୍ତଙ୍କୁ ଉଦ୍‌ବୋଧନ ଦେଇ ବୁଲୁଥିଲେ । ଆପଣାର ପାଶ୍ଚାତ୍ୟ ପ୍ରବାସ କାଳରେ ତାଙ୍କୁ ସେହିସବୁ ସମାଜର ସମ୍ପନ୍ନତା ଓ ଉଦ୍ୟମଶୀଳତା ବିଷୟରେ ଏକ ଉତ୍କୃଷ୍ଟ ମଡ଼େଲ୍ ଦେଖିବାକୁ ମିଳିଥିଲା । ସେହି ମଡ଼େଲକୁ ସିଏ ଏଠି ମଧ୍ୟ ଅବତୀର୍ଣ୍ଣ କରାଇ ଆଣିବେ ବୋଲି ନିରନ୍ତର ବ୍ୟାକୁଳ ହୋଇ ରହିଥିଲେ । ମାତ୍ର; ଓଡ଼ିଶା ବିଷୟରେ ଆମର ଯାବତୀୟ ସ୍ୱାଭିମାନ ଯେ ବୃହତ୍ତର ଭାରତୀୟ ସ୍ୱାଭିମାନର ଏକ ଅଙ୍ଗ ହୋଇ ରହିବା ଉଚିତ, ମଧୁସୂଦନ ସେ କଥାଟିକୁ ହୁଏତ ଯଥେଷ୍ଟ ତୀବ୍ରତା ସହିତ ଅନୁଭବ କରି ପାରୁନଥିଲେ । ଯଦି ପାରିଥାନ୍ତେ, ତେବେ ଭାରତୀୟ ଜାତୀୟ ମହାସଭାରେ ତାଙ୍କର ବାଣୀକୁ ସମଗ୍ର

ଭାରତ ଶୁଣିବାର ଓ ତଦ୍ଭାବ ଉଦ୍‌ବୁଦ୍ଧ ହେବାର ସୌଭାଗ୍ୟ ଲାଭ କରିଥାନ୍ତା ଏବଂ ତଦ୍ଭାବ ଓଡ଼ିଶାର ମଧ୍ୟ ବନ୍ଧନବିଧି ବିମୋଚନ ସମ୍ଭବ ହୋଇ ପାରିଥାନ୍ତା । ମଧୁବାବୁ ଓଡ଼ିଶାରେ ହିଁ ରହିଗଲେ, ତେଣୁ ଓଡ଼ିଶା ମଧ୍ୟ ପଛରେ ରହିଗଲା । ଯେ କୌଣସି ସମୃଦ୍ଧି ସମ୍ଭବ କରିବାକୁ ହେଲେ ଏକ ଉପନିବେଶକୁ ଯେ ସର୍ବପ୍ରଥମେ ପରାଧୀନତାର ଶୃଙ୍ଖଳ ଭିତରୁ ମୁକ୍ତ ହେବାକୁ ପଡ଼ିବ, ପରାଧୀନ ଭାରତରେ ମାତ୍ର ଖଣ୍ଡେ ଏହି ଓଡ଼ିଶାକୁ ବଞ୍ଚ ଓ ଆହୁରି ବଡ଼, କରିବାଲାଗି ଚିନ୍ତା କରୁଥିବା ତାଙ୍କର ନେତୃତ୍ୱ ଓ ତାଁର ଭକ୍ତମାନେ ଶିବିରଟି କ'ଣ ସେ ବିଷୟରେ ଆଦୌ ସଚେତନ ନଥିଲା ?

ମଧୁ ବାବୁଙ୍କ ସହିତ ଉତ୍କଳ ସମ୍ମିଳନୀରେ ଆଉ କେଉଁମାନେ ରହିଥିଲେ ? ଏହି ଅନ୍ୟମାନଙ୍କର ନ୍ୟସ୍ତସ୍ୱାର୍ଥ ଗୁଡ଼ିକ କେଉଁଭଳି ତେଲ ଘଡ଼ରେ ଯାଇ ରହିଥିଲା ? ମଧୁବାବୁଙ୍କ ପରି ଏମାନଙ୍କ ମଧ୍ୟରୁ କେତେଜଣଙ୍କ ମଧ୍ୟରେ ଓଡ଼ିଶା ଓ ଓଡ଼ିଆଙ୍କ ଲାଗି ଏକ ପ୍ରକୃତ ବ୍ୟାକୁଳତା ରହିଥିଲା ? ୧୯୦୩ ମସିହାରେ କଟକଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ଏକ ଅଧିବେଶନରେ ପ୍ରଦତ୍ତ ସଭାପତିଙ୍କ ଅଭିଭାଷଣରୁ ଆମେ ହୁଏତ ତାହାର କିଞ୍ଚିତ୍ ସୂଚନା ପାଇପାରିବା । ସଭାପତି ସେହି ଅଭିଭାଷଣରେ "ଉତ୍କଳ ଦେଶରେ ରାଜା ଓ ଜମିଦାରଙ୍କ ସନ୍ତାନମାନେ ସୁଶିକ୍ଷିତ ହେବା ନିମିତ୍ତ ଗୋଟିଏ ସ୍ୱତନ୍ତ୍ର ଶିକ୍ଷାଗାର ସ୍ଥାପିତ ହେବା ଉଚିତ" ବୋଲି ପ୍ରସ୍ତାବ ଉପସ୍ଥାପିତ କରିଥିଲେ ।···"ରାଜା ଓ ଜମିଦାରମାନଙ୍କର ସନ୍ତାନମାନେ, ଯାହାଙ୍କର କେତେକ ବିଷୟରେ ବିଶେଷ ଯୋଗ୍ୟତାର ଆବଶ୍ୟକ, ସେମାନେ କିପରି ସାଧାରଣ ଜନଙ୍କ ନିମିତ୍ତ ସ୍ଥାପିତ ବିଦ୍ୟାଳୟରେ ଅଧ୍ୟୟନ କରି କୃତକାର୍ଯ୍ୟ ହେବେ ?···ରାଜକୁମାର ଓ ବଡ଼ ବଡ଼ ଜମିଦାରଙ୍କ ସନ୍ତାନମାନେ ଏକତ୍ର ଅଧ୍ୟୟନ କଲେ ସେମାନଙ୍କ ମଧ୍ୟରେ ଅନ୍ୟୋନ୍ୟରେ ମିତ୍ରତା ସ୍ଥାପିତ ହେବ ।···ବାଲ୍ୟକାଳରୁ ସେମାନେ ଯେବେ ଏକତ୍ର ବଢ଼ିବେ ଓ ପଢ଼ିବେ, ତେବେ ସେମାନଙ୍କ ମଧ୍ୟରେ ସଦ୍‌ଭାବ ଓ ଏକତା ହେବାର ଖୁବ୍ ସମ୍ଭବ ।" ସମଗ୍ର ଓଡ଼ିଶାରେ ଯେତେବେଳେ ସର୍ବମୋଟ ବିଦ୍ୟାଳୟ ସଂଖ୍ୟା ହୁଏତ ଆଙ୍ଗୁଠି ଅଗରେ ଗଣି ହୋଇ ଯାଉଥିଲା, ସେତେବେଳେ ଉତ୍କଳ ସମ୍ମିଳନୀର ମଞ୍ଚରେ ରାଜା ଓ ଜମିଦାର ମାନଙ୍କର ସନ୍ତାନମାନଙ୍କ ସକାଶେ ଏକ ବିଶେଷ ଶିକ୍ଷାଗାର ସ୍ଥାପନ କରିବାର କଳ୍ପନା କରାଯାଉଥିଲା ଓ ସେମାନଙ୍କ ମଧ୍ୟରେ ସଦ୍‌ଭାବ ଏବଂ ଏକତା ହେବାର ସୁବିଧା ମଧ୍ୟ ହେଉଥିଲା । ଅର୍ଥାତ୍,

ସେତେବେଳେ ଓଡ଼ିଶା କେଉଁଠି ଥିଲା ଓ ଓଡ଼ିଶାକୁ ଉନ୍ନତ ଓ ସମ୍ପନ୍ନ କରି ଦେଖିବାର ଅଭିଳାଷ ରଖିଥିବା ନେତାମାନେ ସତକୁ ସତ କେଉଁଠି ଥିଲେ ? ଏକ ଆଦର୍ଶ ଓ ଅଗ୍ରସର ଓଡ଼ିଶା କହିଲେ ସେମାନେ ପ୍ରକୃତରେ କ'ଣ ସବୁ ବୁଝୁଥିଲେ କେଜାଣି ?

ଉତ୍କଳ ସମ୍ମିଳନୀର ନେତୃତ୍ୱ ଯେତେବେଳେ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଗୁଡ଼ିକୁ ଗୋଟିଏ ଶାସନ ମଧ୍ୟକୁ ଏକତ୍ର କରିଆଣି ସ୍ୱତନ୍ତ୍ର ପ୍ରଦେଶଟିଏ ଗଠନ ହେବାର ପ୍ରସ୍ତାବ କରୁଥିଲା, ସେତେବେଳେ ଓଡ଼ିଶା କହିଲେ ତାହା ଖୁବ୍ ସମ୍ଭବ ଅଳ୍ପ ବହୁତ ପ୍ରାପ୍ତ ସେହିପରି କିଛି ବୁଝୁଥିଲା । ସମୁଚିତ ରାଜନୀତିକ ଚେତନା ନଥିଲେ ହିଁ ନେତୃତ୍ୱ ଏହିପରି ଆପଣାର କ୍ଷୁଦ୍ର ବାଡ଼ଗୁଡ଼ିକ ଭିତରୁ ବାହାରି କୌଣସି ଚିନ୍ତା କରିବାଲାଗି ଅସମର୍ଥ ହୋଇଥାଏ । ଉପସ୍ଥିତ ଆହ୍ୱାନଗୁଡ଼ିକ ଯେଉଁ ଆୟତନ ଓ ପରିସରର କାର୍ଯ୍ୟନିର୍ଦ୍ଧାରଣ ଦାବୀ କରୁଥାଏ, ସେହି ଆୟତନ ତଥା ପରିସରର ଅନୁରୂପ ଏକ ସଚେତନା ଲାଭ କରିବା ଓ ସେହି ଅନୁସାରେ ଆପଣାର ଆଭିମୁଖ୍ୟ ତଥା କାର୍ଯ୍ୟଗୁଡ଼ିକର ଆୟତନ ଓ ପରିସରଗୁଡ଼ିକୁ ମଧ୍ୟ ବଦଳାଇ ଦେବାକୁ ରାଜି ହେବା, ତାହା ହିଁ ରାଜନୀତିକ ଚେତନା । ଆମେ ନିଜେ ଯେତିକ, ତାହାରି ଭିତରେ ଆବଦ୍ଧ ରହି ଉପସ୍ଥିତ ପରିସ୍ଥିତି ତଥା ଆହ୍ୱାନ ଗୁଡ଼ିକୁ ଦେଖିବା, ଅର୍ଥାତ୍ ପରିସ୍ଥିତିର ପରିସର ବଦଳି ଯାଉଥିଲେ ମଧ୍ୟ ତଥାପି ଗୋଡ଼ ହାତ ବାନ୍ଧି ବସିଥିବା, ତାହା ହେଉଛି ରାଜନୀତିକ ଅସମର୍ଥତା । ଓଡ଼ିଶାର ନେତୃତ୍ୱ ହୁଏତ ସେହି ସମୟରୁ ହିଁ ଭାରତବର୍ଷକୁ ନଦେଖି କେବଳ ଓଡ଼ିଶାକୁ ଦେଖିବାର ମିଛ ବାଟଟିକୁ ଧରିଲା । ମାତ୍ର ଅନ୍ୟ ପକ୍ଷରେ, ସମଗ୍ର ଭାରତବର୍ଷରେ ସେତେବେଳେ ଖଣ୍ଡ ଗୁଡ଼ାକର କ୍ଷୁଦ୍ର ବାଡ଼ଗୁଡ଼ିକୁ ଭାଙ୍ଗି ଏକ ବୃହତ୍ତର ମହା ସ୍ରୋତରେ ମିଶିବାର ଆହ୍ୱାନ କ୍ରମେ ଅଧିକରୁ ଅଧିକ ଶକ୍ତିଶାଳୀ ଭାବରେ ଶୁଣା ଯିବାକୁ ଆରମ୍ଭ କରିଥିଲା । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ସେତେବେଳେ ମାନବ ମୁକ୍ତି ଏବଂ ମାନବ-ସ୍ୱୀକୃତିର ନୂତନ ସଜ୍ଞା ଗୁଡ଼ିକ ମଧ୍ୟ ଅନୁଭୂତ ହୋଇ ଆସୁଥିଲା । ଓଡ଼ିଶାରେ ସେ ସବୁର ଅଦୌ କୌଣସି ଆଘାତ ଅଥବା ଆବେଦନ ଅନୁଭୂତ ହିଁ ହେଉନଥିଲା । ସମ୍ଭବତଃ କେବଳ ଗୋପବନ୍ଧୁ ଦାଶ ଏଥିରେ ଏକ ବ୍ୟତିକ୍ରମ ଥିଲେ ।

ସିଏ ପ୍ରକୃତରେ ଏକ ବ୍ୟତିକ୍ରମ ବୋଲି ଉତ୍କଳ ସମ୍ମିଳନୀର ସେହି ପୁରୁଣା ମଞ୍ଚ ଓ ତାହାର ପୁରୁଣା ଖୁଣ୍ଟମାନଙ୍କ ସମ୍ମୁଖରେ ଭାରି ଚଞ୍ଚଳ ଧରା

ଚଢ଼ିଯାଇଥିଲା । ଗୋପବନ୍ଧୁ ଓଡ଼ିଶା କହିଲେ ଓଡ଼ିଶାର ସବୁ ମଣିଷଙ୍କୁ ହିଁ ବୁଝୁଥିଲେ । ସେହିମାନଙ୍କର ଅସଲ ଆବଶ୍ୟକତାକୁ ଜାଣି ସେ ଗୁଡ଼ିକର ଏକ ଯଥାର୍ଥ ସମାଧାନ ବାହାର କରିବାକୁ ହିଁ ଯଥାର୍ଥ ନେତୃତ୍ୱ ବୋଲି ହୃଦୟଙ୍ଗମ କରୁଥିଲେ । ସେହି ଲୋକମାନଙ୍କ ସକାଶେ ହିଁ ସିଏ ମଧ୍ୟ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଗଠନ ହେଉ ବୋଲି ଇଚ୍ଛା କରୁଥିଲେ । ସିଏ ଏକ ଅନ୍ୟ ଭବିଷ୍ୟ କାମନା କରୁଥିଲେ, ମଣିଷର ଲକ୍ଷ୍ମୀମନ୍ତ ସମ୍ଭାବନା ଗୁଡ଼ିକୁ ଯଥାର୍ଥ ସ୍ୱୀକୃତି ଦେଇ ନୂତନ ମୂଲ୍ୟ ପ୍ରେରଣାରେ ଏକ ଅନ୍ୟ ସାମୂହିକତା ଇଚ୍ଛା କରୁଥିଲେ । ସାମୂହିକ ସ୍ତରରେ ସେହିପରି ଏକ ଅଲୋକନକାରୀ ସମ୍ପୂର୍ଣ୍ଣ ଯୋଜନାକୁ ହିଁ ସେ ଶିକ୍ଷା ବୋଲି କହୁଥିଲେ ଓ ସେହି ଶିକ୍ଷାର ଏକ ସାହସଯୁକ୍ତ ପ୍ରୟୋଗ ମଧ୍ୟ କରିଥିଲେ । ମହାତ୍ମା ଗାନ୍ଧୀ ଭାରତୀୟ ଜାତୀୟ କଂଗ୍ରେସର ବୃତ୍ତ ମଧ୍ୟରେ ପ୍ରବେଶ କରିବା ପରେ ଜାତୀୟ ସଂଗ୍ରାମ ଓ ଅଭିଳାଷ ଗୁଡ଼ିକରେ ଯେଉଁ ଦୃଷ୍ଟିଗତ ପରିବର୍ତ୍ତନ ଗୁଡ଼ିକର ସୂତ୍ରପାତ ହୋଇଥିଲା, ଗୋପବନ୍ଧୁ ଓଡ଼ିଶାରେ ସାଧାରଣ ଯେଉଁ ସବୁ କ୍ଷେତ୍ରକୁ ପ୍ରବେଶ କରିଥିଲେ, ସେ ସେଇସବୁ କ୍ଷେତ୍ରରେ ସେହିପରି ଏକ ପରିବର୍ତ୍ତନ କାମୀ ଭୂମିବଦଳାର ଉଦ୍‌ବେଳନ ଆଣି ଦେଇଥିଲେ । ଓଡ଼ିଶାର ରାଜନୀତି, ସାହିତ୍ୟ, ଶିକ୍ଷା ଓ ସମାଜ ସଂସ୍କାର କ୍ଷେତ୍ରରେ ସିଏ ସ୍ଥାନୀୟ ସକଳ ଉଦ୍ୟମ ଓ ସ୍ୱପ୍ନ ଗୁଡ଼ିକର ସୂତ୍ରକୁ ନେଇ ବୃହତ୍ତର ଭାରତବର୍ଷର ନୟୂଡ଼ି ସହିତ ଯୋଡ଼ି ଦେଇଥିଲେ । ଓଡ଼ିଶାକୁ ମଧ୍ୟ ସେହି ନୂତନ ଅଭିଳାଷର ଗଙ୍ଗା ପ୍ରବାହିତ ହୋଇ ଆସିଥିଲା । ଏକ ବୃହତ୍ତର ସମଗ୍ରତା ଭିତରେ ଓଡ଼ିଶା ଆପଣାକୁ ଆବିଷ୍କାର କଲା । ଚେର ଗୁଡ଼ିକ ତଥାପି ରହିଲା । ଓଡ଼ିଶାର ସାମୂହିକ ଗୁହା ମୁକ୍ତିର ସେହି ଇତିହାସରେ ଆମେ ସତ୍ୟବାଦୀର ଅବଦାନକୁ ସବାଆଗ ଏଇଥି ନିମନ୍ତେ ହିଁ ମନେ ରଖିବା ।

ଗୋପବନ୍ଧୁ ଦାଶ ଭାରତର ସ୍ୱାଧୀନତା ପାଇଁ ଲଢ଼ୁଥିଲେ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଅନ୍ଦୋଳନରେ ମଧ୍ୟ ସେ ଏକ ବିଶେଷ ଭୂମିକା ଗ୍ରହଣ କରିଥିଲେ । ଉତ୍କଳ ଗୌରବ ମଧୁସୂଦନ ଓ ତାଙ୍କର ସମଧର୍ମୀ ଅନ୍ୟମାନେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ଗଠନକୁ ହୁଏତ ଏତେ ଅଧିକ ଉଚ୍ଚାଟିତ ଭାବରେ ଦେଖୁଥିଲେ ଯେ ଉତ୍କଳ ଏକ ସ୍ୱତନ୍ତ୍ର ଏକକରୂପେ ଯଥାର୍ଥ ସମୃଦ୍ଧି ଲାଭ କରିବାକୁ ହେଲେ ଭାରତବର୍ଷକୁ ଯେ ରାଜନୀତିକ ପରାଧୀନତା ମଧ୍ୟରୁ ମୁକ୍ତ ହୋଇ ବାହାରି ଆସିବାକୁ ପଡ଼ିବ, ସେକଥା ସେମାନେ ହୁଏତ ମୋଟେ ଉପଲବ୍ଧି କରି ପାରୁନଥିଲେ । ବ୍ରିଟିଶ୍ ରାଜତ୍ୱର ଏଠି କେବେ ଅନ୍ତ ହେବ ବୋଲି ସେମାନଙ୍କର ରାଜନୀତିକ

ଗଣିତ-ପୁସ୍ତକରେ ଅର୍ଦ୍ଧେ ଲେଖା ହୋଇନଥିଲା । ଉତ୍କଳ ସମ୍ମିଳନୀର ପ୍ଲାଟଫର୍ମରୁ ଯୋଦ୍ଧାମାନେ (ଗୋପବନ୍ଧୁଙ୍କୁ ଛାଡ଼ିଦେଲେ) ଭାରତୀୟ ମୁକ୍ତି ସଂଗ୍ରାମରେ କୌଣସି ଭାଗ ନେଇ ନଥିଲେ । ଏହି ସଂଗ୍ରାମକୁ ସେମାନେ ଅନ୍ୟ ନାନା ସ୍ୱାର୍ଥଦ୍ୱାରା ପରିଚାଳିତ ହୋଇ ଏକ କଷ୍ଟ ଦୃଷ୍ଟିରେ ଦେଖୁଥିଲେ । ସଂଗ୍ରାମରତ ଭାରତବର୍ଷ ସାଇମନ କମିଶନକୁ 'ଫେରିଯାଅ, ଫେରିଯାଅ' ବୋଲି କହି ଭର୍ତ୍ସନା କଲାବେଳେ ଏମାନେ ତାହାକୁ ସ୍ୱାଗତ ଜଣାଇଥିଲେ । ହୁଏତ ସେଇଥିଲାଗି କଟେଇରୁ ଡ଼ିଗ୍ରୀ ପାଇଗଲେ । ୧୯୩୬ ମସିହାରେ ସରକାରଙ୍କ ଆଦେଶରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହେଲା ।

ସେତେବେଳକୁ ଗୋପବନ୍ଧୁ ଏବଂ ମଧୁସୂଦନ ଉଭୟେ ଇହଧାମ ତ୍ୟାଗ କରି ସାରିଥିଲେ । ଓଡ଼ିଶାର ଅସଲ ସଂଗ୍ରାମ ଓ ଅସଲ ପ୍ରସ୍ତୁତି ଗୁଡ଼ିକ ଲାଗି ଯେତେବେଳେ ଗୋପବନ୍ଧୁଙ୍କର ହୁଏତ ସବୁଠାରୁ ଅଧିକ ପ୍ରୟୋଜନ ରହିଥିଲା, ଗୋପବନ୍ଧୁ ସେତେବେଳେ ବିଦାୟ ନେଇ ଚାଲିଗଲେ । ପଚାଶ ବର୍ଷ କ'ଣ ଜଣେ ଲୋକନାୟକର ମରିବା ବୟସ ? ଯଦି ସେ ଭାରତବର୍ଷ ରାଜନୈତିକ ସ୍ୱାଧୀନତା ଲାଭ କରିବା ପର୍ଯ୍ୟନ୍ତ, ଅର୍ଥାତ୍ ଆଉ ମାତ୍ର ୨୦ ବର୍ଷ ବଞ୍ଚିଥାଆନ୍ତେ, ତେବେ ଓଡ଼ିଶାରେ ନେତୃତ୍ୱ ତାଙ୍କର ସଙ୍ଗ ହୁଏତ ଅନ୍ୟ ପ୍ରକାର ଗୋଡ଼ା ହୋଇଥାନ୍ତା । ଯେଉଁମାନେ ଏକଦା ସତ୍ୟବାଦୀରେ ଗୋପବନ୍ଧୁଙ୍କର ନିକଟ ସହକର୍ମୀ ଥିଲେ ଓ ତେଣୁ ତାଙ୍କର ବ୍ୟକ୍ତିତ୍ୱ ମଧ୍ୟରେ ରହିଥିବା ପରି ଦିଶୁଥିଲେ, ଗୋପବନ୍ଧୁଙ୍କ ପରେ ସେମାନେ ତାଙ୍କ କଥା ଛାଡ଼ିଦେଲେ, ସତ୍ୟବାଦୀକୁ ମଧ୍ୟ ମନେ କଲେ ନାହିଁ । ନାନା ଅନ୍ତଃସଂଘର୍ଷ ମଧ୍ୟରେ ଆନ୍ଦୋଳିତ ହେଉଥିବା ପରି ବଡ଼ ଉଗ୍ର ଭାବରେ ଭାରି ଏପାଖ ସେପାଖ ହେଲେ । ଏଠାରେ ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶଙ୍କର ଦୃଷ୍ଟାନ୍ତଗୁଡ଼ିକୁ ବିଶେଷ ଭାବରେ ଉଲ୍ଲେଖ କରାଯାଇ-ପାରେ । ଜୀବନାବସାନ ପର୍ଯ୍ୟନ୍ତ ସେମାନେ ସତେ ଯେପରି ଏକ ଦ୍ୱୈତ ଅନୁରକ୍ତି ଅଥବା ବିଭାଜିତ ଅନୁରକ୍ତିର ଧର୍ମସଙ୍କଟ ଭିତରେ ସବଦା ଘାଣ୍ଟି ହେଉଥିଲେ । ଏପରିକି ଶ୍ରୀ ଗୋଦାବରୀଶ ମହାପାତ୍ର ମଧ୍ୟ ସେହି ଆବଦ୍ଧ ମଧ୍ୟରେ ପଡ଼ି ରହିଗଲେ । ସତ୍ୟବାଦୀରୁ ଆରମ୍ଭ କଲେ ଓ "ନଅାଁଖୁଣ୍ଟା"ରେ ଶେଷ କଲେ । ଗୋପବନ୍ଧୁ ଓ ମଧୁସୂଦନଙ୍କର ନେତୃତ୍ୱ ଯେ ଯୁଗାତ୍ମକ ଭାବରେ ଦୁଇ ପ୍ରକାର ଲକ୍ଷକୁ ଆପଣାର ଅଭୀଷ୍ଟରୂପେ ଗ୍ରହଣ କରିଥିଲା ଓ ତେଣୁ ଦୁଇ ପ୍ରକାର ଆଗ୍ରହ ଦ୍ୱାରା ପରିଚାଳିତ ହେଉଥିଲା, ପରବର୍ତ୍ତୀ କାଳରେ ସେହି କଥାଟି ଏକାବେଳେକେ ପାସୋର ହୋଇ ରହିଗଲା । ଏକ ଋଷ୍ଟହୀନ ପ୍ରାଦେଶିକ ଭାବପ୍ରବଣତା ମଧ୍ୟରେ ଯାବତୀୟ

ରାଜନୀତିକ ସଚେତନତାକୁ କେଡ଼େ ଅକୁଶଳ ଭାବରେ ପୋଛିପକାଇ ରଖି ଦିଆଗଲା ।

ପ୍ରଧାନତଃ ଯେଉଁ ନେତୃତ୍ୱର ଆନ୍ଦୋଳନ ଉପରେ ବସି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶରୂପୀ ଅର୍ଦ୍ଧଚନ୍ଦ୍ର ଫଳଟି ଆମର ହସ୍ତଗତ ହୋଇଥିଲା, ତାହାର ଏକ ରାଜନୀତିକ ପରୀକ୍ଷା ବେଶ୍ କରାଯାଇ ପାରେ । ସେହି ନେତୃତ୍ୱ ଓଡ଼ିଶା କହିଲେ ପ୍ରକୃତରେ କ'ଣ ବା କେତେ ବୁଝୁଥିଲା ? ଗୋଟିଏ ଭୂମି କହିଲେ ସର୍ବପ୍ରଥମେ ଯେ ସେହି ଭୂମିରେ ବାସ କରୁଥିବା ମଣିଷମାନଙ୍କୁ ବୁଝାଏ, ସେହି ନେତୃତ୍ୱ ଏ କଥାଟିକୁ ଆଦୌ ବୁଝିଥିଲା କି ? ନୂଆ ଓଡ଼ିଶା ନାମରେ ଯେତେବେଳେ ଆମ ଭିତରକୁ ଗଞ୍ଜାମ ଆସିଲା ଓ କୋରାପୁଟ ଆସିଲା । ଏହି ଦୁଇ ଜିଲ୍ଲାରେ ପ୍ରଧାନତଃ ଆଦିବାସୀମାନେ ହିଁ ବାସ କରୁଥିଲେ, ଏବେ ମଧ୍ୟ କରୁଛନ୍ତି । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଧୁରୀଣମାନେ ନଜର ପାଞ୍ଜି ଭିତରେ ସେମାନଙ୍କୁ ମଧ୍ୟ ଆଦୌ କୌଣସି ତାତ୍ପର୍ଯ୍ୟର ସହିତ ଗଣା କରୁଥିଲେ କି ? ଏକ ସ୍ୱତନ୍ତ୍ର ପ୍ରଦେଶର ଆର୍ଥିକ ଗଠନ ଗୁଡ଼ିକ ଯେ ତାହାର ରାଜନୀତି ଓ ଶାସନନୀତି ଗୁଡ଼ିକୁ ଅନେକ ପ୍ରକାରେ ପ୍ରଭାବିତ କରିଥାଏ, ଆମର ତତ୍କାଳୀନ ବିଜେତାମାନେ ତାହାର କୌଣସି ଖବର ରଖିଥିଲେ କି ? ୧୯୩୬ ପରେ ଫରକ ହିଁ ଏତିକ ହେଲା ଯେ, ବ୍ରିଟିଶ ଶାସନଫାନ୍ଦା ଭିତରେ ଏକ ନୂତନ ସାହି ଗଢ଼ା ହେଲା । ଶୋଷଣ ରହିଲା, ସାମନ୍ତବାଦ ରହିଲା, ଆଉ କିଛି ସ୍ଥାନୀୟ ଅଧିକ ଚତୁର ଓ ଅଧିକ ଭାଗ୍ୟବାନ୍ ମଣିଷ ସେହି ଶୋଷଣ ଓ ସେହି ସାମନ୍ତବାଦରୁ ଲାଭ ଉଠାଇଲେ । ଏଣିକି ଓଡ଼ିଆମାନେ ମଧ୍ୟ ସାମନ୍ତ ବାଦରୁ ଲାଭ ଉଠାଇଲେ । ଏଣିକି ଓଡ଼ିଆମାନେ ମଧ୍ୟ ସାମନ୍ତ ହୋଇପାରିଲେ, କଳଟି ଭିତରେ ବଡ଼ ବଡ଼ କବଜା ହୋଇ ଲଟିପାରିଲେ,-ହୋଇପାରିଲେ, ତାହାକୁ ହିଁ ଅନେକ କ୍ଷେତ୍ରରେ ଓଡ଼ିଆ ମାନଙ୍କର ଏକ ସିଦ୍ଧି ବୋଲି କୁହାଗଲା । କଳଟା ଯେମିତି ଥିଲା, ଠିକ୍ ସେହିପରି ରହିଲା ।

ସବୁଠାରୁ ଅଧିକ କୌତୁହଳର କଥା ହେଉଛି, ଗଡ଼ଜାତର ରାଜାମାନଙ୍କ କ୍ଷେତ୍ରରେ ସ୍ୱତନ୍ତ୍ର ଓଡ଼ିଶା ହେବା ଦ୍ୱାରା କେଉଁଠି କିଛି ପରିବର୍ତ୍ତନ ଘଟିଲା ନାହିଁ । ସେମାନଙ୍କ ବିଷୟରେ କୌଣସି ପ୍ରଶ୍ନର ଉତ୍ଥାପନ ହିଁ କରାଯାଇ ନଥିଲା । ସେମାନଙ୍କ ଭିତରୁ ଆଖିଦୃଶିଆ ଭାବରେ କେତେଜଣ ସ୍ୱତନ୍ତ୍ର ଓଡ଼ିଶା ଆନ୍ଦୋଳନ ଭିତରେ ରହିଥିଲେ । ସେହି ଆନ୍ଦୋଳନକୁ କେଡ଼େ ଉଦାର ଭାବରେ ଓଡ଼ିଆ

ଆନ୍ଦୋଳନ ବୋଲି କୁହା ଯାଉଥିଲା । ଓଡ଼ିଶାର ବଡ଼ ବଡ଼ କବି ସେମାନଙ୍କ ମଧ୍ୟରୁ ଅନେକଙ୍କର ପୃଷ୍ଠପୋଷକତା ପାଇ ଅଧିକ ଲେଖି ଅଧିକ ଛାପିବା ଲାଗି ଉତ୍ସାହିତ ବି ହେଉଥିଲେ । ଓଡ଼ିଶାରେ ଯଦି ଆଉ କିଛି ଅଧିକ ସଂଖ୍ୟାରେ ବିଦ୍ୟୋତ୍ସାହୀ ଓ ସାହିତ୍ୟ ରସିକ ରାଜା ଥାଆନ୍ତେ, ତେବେ ୫୦।୬୦ ବର୍ଷ ମଧ୍ୟରେ···ଦରିଦ୍ର ଉତ୍କଳ ଭାଷା ମଧ୍ୟ ପୃଥିବୀରେ ଗୋଟିଏ ଗଣନୀୟ ଭାଷା ହୋଇପାରନ୍ତା ବୋଲି ସ୍ୱୟଂ କବିବର ରାଧାନାଥ ଏକଦା ଦୁଃଖ କରି ମତ ଦେଇଥିଲେ । ଏପରିକି, ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହେବାର ଏଗାର ବର୍ଷ ପରେ ଯେତେବେଳେ ଭାରତବର୍ଷ ରାଜନୈତିକ ସ୍ୱାଧୀନତା ହାସଲ କଲା, ସେତେବେଳେ ମଧ୍ୟ ସେହି ରାଜାମାନେ ଓଡ଼ିଶା ଭିତରେ ରହିଲେ କିମ୍ବା ଓଡ଼ିଶାର କାମରେ ଲାଗିଲେ କି ? ଉତ୍କଳୀୟମାନଙ୍କ ସହିତ ଉତ୍କଳୀୟ ହେବାକୁ ବା ଭାରତୀୟମାନଙ୍କ ସହିତ ଭାରତୀୟ ହେବାକୁ ସେମାନଙ୍କୁ ତଥାପି ଯେପରି ଭାରି ଲାଜ ଲାଗୁଥିଲା । ସେମାନେ ସବୁଦିନେ ସେହି ରାଜା ହୋଇ ରହିଥାଆନ୍ତେ-ସେମାନେ ସତେ ଅବା ସେହିପରି ଇଚ୍ଛା କରୁଥିଲେ । ତେଣୁ ସ୍ୱାଧୀନ ଦେଶର ଜଣେ ଜଣେ ନାଗରିକ ହେବାକୁ ଏକ ଅପମାନଜନକ ବ୍ୟାପାର ବୋଲି ଗଣ୍ୟ କରୁଥିଲେ ।

ଏହି ପ୍ରସଙ୍ଗରେ ଏହି ଶତାବ୍ଦୀର ଆରମ୍ଭ କାଳରେ ଘଟିଥିବା ଏକ ଘଟଣା ଭାରି ମନେପଡ଼ି ଯାଉଛି । ଯେତେବେଳେ ପଶ୍ଚିମ ଓଡ଼ିଶାର ଅଠର ଗଡ଼ଜାତ ବ୍ରିଟିଶ ଶାସନର ସ୍ତରରେ ମଧ୍ୟପ୍ରଦେଶ ଓ ନାଗପୁର ସହିତ ଗୁନ୍ଥା ହୋଇ ରହିଥିଲା । ସେତେବେଳେ ମୋଗଲବନ୍ଦୀ ସମେତ ଓଡ଼ିଶା ଡିଭିଜନ୍ ବୋଲି ଯାହା କୁହା ଯାଉଥିଲା, ତାହା ବଙ୍ଗ ପ୍ରଦେଶ ସହିତ ଯୋଡ଼ା ହୋଇଥିଲା । ଖାସ୍‌ମାହାଲ ସମ୍ବଲପୁର ସହିତ ଅଠର ଗଡ଼ଜାତକୁ ସେପଟୁ ଆଣି ଏପଟେ ଓଡ଼ିଶା ଡିଭିଜନ୍ ସହିତ ଯୋଡ଼ିବାର ଏକ ପ୍ରସ୍ତାବ ଏକଦା ସରକାରୀ ସ୍ତରରେ ଆସିବାରୁ ଅଠର ଗଡ଼ଜାତର ରାଜାମାନେ ତାହାର ପ୍ରତିବାଦ କରିଥିଲେ । ଏହି ଗଡ଼ଜାତ ଓ ଖାସ୍‌ମାହାଲରେ ବାସ କରୁଥିବା ଅଧିକାଂଶ ଲୋକଙ୍କର ମାତୃଭାଷା ଓଡ଼ିଆ ଥିଲା, ତେଣୁ ସେମାନଙ୍କୁ ଓଡ଼ିଶା ଡ଼ିଭିଜନ ସହିତ ଯୋଡ଼ିଲେ ସେମାନଙ୍କର ତଥା ଗବର୍ଣ୍ଣମେଣ୍ଟ୍ ବାହାଦୁରଙ୍କର ପ୍ରଶାସନଗତ ସୁବିଧା ହେବା ଦୃଷ୍ଟିରୁ ଏହିପରି ଗୋଟିଏ ପଦକ୍ଷେପ ନିଆ ଯାଉଥିଲା । ରାଜାମାନେ ତାହାର ପ୍ରତିବାଦ କରିଥିଲେ । ସେମାନେ ଓଡ଼ିଶା ଡ଼ିଭିଜନ ଭିତରକୁ ନଆସି ସେହି ନାଗପୁର ସହିତ ରହିବା ଲାଗି ଅଧିକ ପସନ୍ଦ କରୁଥିଲେ । ସ୍ୱୟଂ ଗବର୍ଣ୍ଣମେଣ୍ଟ୍ ସେମାନଙ୍କର ଏହି

ପ୍ରତିବାଦରେ ବିଷୟଟି ପ୍ରକାଶ କରିଥିଲେ । ଅନିଚ୍ଛାର କାରଣ ହେଉଛି, ଓଡ଼ିଶା ଡିଭିଜନ୍‌ର କମିଶନର ରୂପେ ବେଳେବେଳେ କୌଣସି ଭାରତୀୟଙ୍କୁ ମଧ୍ୟ ନିଯୁକ୍ତ କରି ଯାଉଥିଲା । ମାତ୍ର ନାଗପୁର ଡିଭିଜନ୍‌ରେ ସେତେବେଳ ପର୍ଯ୍ୟନ୍ତ କମିଶନର୍ ପଦରେ କେବଳ ସାହେବମାନଙ୍କୁ ଅଧିଷ୍ଠିତ କରି ଯାଉଥିଲା । ଅମ ମହାମହିମ ଓ ସମ୍ମାନସଚେତନ ରାଜାମାନେ ଜଣେ ଭାରତୀୟଙ୍କୁ କର୍ତ୍ତା ରୂପେ ସ୍ୱୀକାର କରିବା ଅପେକ୍ଷା ଜଣେ ପ୍ରିମ୍ପୂରି ସାହେବଙ୍କ ଅଧୀନରେ ରହିବାକୁ ହିଁ ଅଧିକ ସମ୍ମାନର କଥା ବୋଲି ବିଚାର କରୁଥିଲେ । ସେହିମାନଙ୍କ ମଧ୍ୟରୁ ଥୋକେ କ’ଣ ପାଞ୍ଚ କମ୍ବା ଓଡ଼ିଶା ପାଇଁ କେଉଁ ଭାଗ୍ୟ ମନାସି ଉତ୍କଳ ସମ୍ମିଳନୀରେ ସମବେତ ହୋଇଥିଲେ ବା ଉତ୍କଳ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଢ଼ାହେଉ ବୋଲି ଇଚ୍ଛା କରୁଥିଲେ, ତାହାର ବିଶ୍ଳେଷଣ କରି ବସିଲେ ପ୍ରକୃତରେ ବଡ଼ ସଂଶୟରେ ଯାଇ ପଡ଼ିବାକୁ ହୋଇଥାଏ । ଓଡ଼ିଶା ସହିତ ସେମାନଙ୍କର କେଉଁଟି କି ଭାଗ୍ୟ ଜଡ଼ିତ ହୋଇ ରହିଥିଲା ? ଅଥବା ସେମାନେ ସବୁଯାକ ସାମନ୍ତ ଏକତ୍ର ଗୋଷ୍ଠୀ ବାନ୍ଧି ଓଡ଼ିଶାକୁ ଚିରନ୍ତନ କାଳ ଲାଗି ଭୋଗ କରିବାକୁ ଇଚ୍ଛା ପୋଷଣ କରିଥିଲେ ଓ ସେଇଥିଲାଗି ସମ୍ମିଳନୀ ମଣ୍ଡାଇ ବସିବାକୁ ଆସିଥିଲେ କି ?

ଓଡ଼ିଶାରେ ନାନା ମଞ୍ଚ ଓ ନାନା ଅବସରରେ ଓଡ଼ିଶାକୁ ଏକ ଦେଶ ବୋଲି କୁହାଯାଏ, ଓଡ଼ିଆମାନଙ୍କୁ ଏକ ଜାତି ବୋଲି କୁହାଯାଏ । ଦେଶ ଓ ଜାତି ପାରିଭାଷିକ ଶବ୍ଦାଭିଧାନରେ ଏଗୁଡ଼ିକର ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଅର୍ଥପରିସର ରହିଛି । ସେହି ଅର୍ଥ ପରିସରକୁ ମନଇଚ୍ଛା ଭାଙ୍ଗି ପକାଇଲେ ତଦ୍ୱାରା ଅମେ ଆମ ନିଜ ସମେତ ସଂପୃକ୍ତ ସମସ୍ତଙ୍କ ପାଇଁ ପ୍ରକୃତରେ ଅନେକ ପ୍ରମାଦହିଁ ସୃଷ୍ଟି କରିବା । ପ୍ରାଚୀନ କାଳରେ କ୍ଷତ୍ରିୟ ଓ ବ୍ରାହ୍ମଣ ପ୍ରଭୃତି ଗୋଷ୍ଠୀଙ୍କୁ ଯେଉଁ ଅର୍ଥରେ ଜାତି ବୋଲି କୁହାଯାଉଥିଲା, ବର୍ତ୍ତମାନ କାଳରେ ରାଜନୀତି-ଶାସ୍ତ୍ରରେ ଜାତି କହିଲେ ସେହି ଗୋଷ୍ଠୀମାନଙ୍କୁ ମୋଟେ ବୁଝାଇବ ନାହିଁ । ଏହି ବିଶିଷ୍ଟ ଅର୍ଥରେ ଶବ୍ଦଟିକୁ ଅମେ ଇଉରୋପରୁ ଆଣିଛୁ । ଇଉରୋପୀୟ ସେହି ମଡ଼େଲ୍‌ଟିରୁ ପ୍ରେରଣା ପାଇ ଅମେ ଭାରତ ” ବର୍ଷରେ ଆମ ଘରେ ମଧ୍ୟ ସ୍ୱୟଂ ଗୋଟିଏ ଜାତି ବୋଲି ସଚେତନ ହୋଇଛୁ । ଜାତୀୟ ମୁକ୍ତି-ସଂଗ୍ରାମରେ ସେହି ସଚେତନତା ଆମକୁ ଅନେକ ଖୋରାକ ଯୋଗାଇଛି ଏବଂ ଏହିପରି ଏକ ଜାତି ହିସାବରେ ହିଁ ଅମେ ଆମର ରାଜନୀତିକ ସ୍ୱାଧୀନତା ହାସଲ କରିଛୁ, ଭାରତବର୍ଷ କୁଅଡ଼େ ଇତିହାସର ଆବହମାନ କାଳରୁ ମଧ୍ୟ ସଚେତନ ଭାବରେ ଏକ ଜାତି ହୋଇ

ରହିଥିଲା ବୋଲି ଏବେ ମଧ୍ୟ ଅତୀତ ଦରଣ ଅନେକ ସୁଧୀ ମତ ବ୍ୟକ୍ତ କରି-ଥାନ୍ତି । ସେମାନେ ସମ୍ଭୂତନ୍ତ୍ର ଭୁଲଗୁଡ଼ା ଦେଇ ନିଜର ମନୋବୃତ୍ତିକୁ ପୁଷ୍ଟ କରିବାକୁ ଚେଷ୍ଟା କରିଥାନ୍ତି । ଏକଥା ସତ୍ୟ ଯେ, ଊନବିଂଶ ଶତାବ୍ଦୀରେ ଇଉରୋପୀୟ ବିଶ୍ୱର ଏବଂ ବିବର୍ତ୍ତନଗୁଡ଼ିକ ସହିତ ଆମର ଯୋଗ ଲାଗିବା ପରେ ଆମେ ସେଇଠିରୁ ମାପକ ଏବଂ ମାନଦଣ୍ଡଗୁଡ଼ିକୁ ଆଣି ନିଜକୁ ମଧ୍ୟ ନୂତନ ଭାବରେ ଅନାଇ ଶିଖିଲୁ ଏବଂ ନିଜ ଅତୀତ ଭିତରୁ ସହିତ ଦ୍ୟୋତକ ଉପାଦାନଗୁଡ଼ିକୁ ଆବିଷ୍କାର କରି ସେଗୁଡ଼ିକୁ ଏହି ନୂଆ ସନ୍ତକଗୁଡ଼ିକର ବ୍ୟଞ୍ଜନା ଦେଇ ଦେଖିବାକୁ ଆରମ୍ଭ କଲୁ । ମାତ୍ର, ସେହି ବ୍ୟଞ୍ଜନା ଆମ ପ୍ରେରଣାଗୁଡ଼ିକର ପରେ ଆମକୁ ଯେତେ ଯାହା ଉଦ୍‌ବୁଦ୍ଧ କରିଥିଲେ ମଧ୍ୟ ତାକୁ ଆମେ ତଥାପି ଆମ ଇତିହାସର ଗୋଟିଏ ଗୋଟିଏ ତଥ୍ୟ ବୋଲି ମୋଟେ ମନ କରିବାକୁ ଯିବା ନାହିଁ, ଗଲେ ପ୍ରମାଦରେ ପଡ଼ିବା ।

ଓଡ଼ିଆକୁ ଓଡ଼ିଆରେ କେତେକ ବ୍ୟକ୍ତି ଦେଶ ବୋଲି କହିଥାନ୍ତି । ନିଜ ଘରଟି ବ୍ୟକ୍ତିଗତ କୌଣସି କାରଣରୁ ଆଉ ଅନ୍ୟ କିଛି କୋଉଠି ରହିଛି ବୋଲି ନ ଦିଶିଲେ ଅନେକ ବ୍ୟକ୍ତି ତାହାକୁ ଅନେକ ସମୟରେ ସଂସାର ବୋଲି ମଧ୍ୟ କହିଥାନ୍ତି । ଓଡ଼ିଶା ଯଦି ଓଡ଼ିଆଙ୍କ ପାଇଁ ଗୋଟିଏ ଦେଶ ହେଲା, ତେବେ ତାମିଲନାଡ଼ୁ ତାମିଲମାନଙ୍କ ପାଇଁ କାହିଁକି ଏକ ଦେଶ ନହେବ, ଗୁଜରାଟ ଗୁଜରାଟୀମାନଙ୍କ ପାଇଁ କାହିଁକି ଏକ ଦେଶ ନହେବ ଏବଂ, ପଞ୍ଜାବ ମଧ୍ୟ ପଞ୍ଜାବୀ-ମାନଙ୍କ ପାଇଁ କାହିଁକି ଏକ ଦେଶ ନହେବ ? ଏକଦା ଶିଖ ଓ ମରାଠାମାନେ ମୋଗଲମାନଙ୍କ ବିରୁଦ୍ଧରେ ଯେଉଁ ଯୁଦ୍ଧ କରିଥିଲେ, ପିଲାମାନଙ୍କ ପାଇଁ ବଡ଼ମାନେ ଲେଖିଥିବା ବହିରେ କେତେକ ସ୍ଥଳରେ ତାହାକୁ ଜାତୀୟ ସମର ବୋଲି କୁହା ଯାଇଥାଏ । ରାଜସ୍ଥାନର ରାଣା ପ୍ରତାପଙ୍କୁ ମଧ୍ୟ କେହି କେହି ଦେଶଭକ୍ତ ବୋଲି ବର୍ଣ୍ଣନା କରନ୍ତି । ରାଜା ପୁରୁଷୋତ୍ତମ ଦେବ କିମ୍ବଦନ୍ତୀ ଅନୁସାରେ ଯେତେ-ବେଳେ କାଞ୍ଚିରାଜାଙ୍କ ସହିତ ଯୁଦ୍ଧ କରିବା ଲାଗି ଅଭିଯାନରେ ବାହାରିଥିଲେ, ସେତେବେଳେ ଭାରତର ଶବ୍ଦାର୍ଥ ଶାସ୍ତ୍ରରେ ଦେଶ ବା ଜାତି ବୋଲି ଦୁଇଟି ଶବ୍ଦ ହିଁ ନଥିଲା । ତେବେ ସେହି ଯୁଦ୍ଧକୁ ଆମେ ଜାତୀୟ ଗୌରବର ଏକ ଦୃଷ୍ଟାନ୍ତ ବୋଲି କହିବା କାହିଁକି ? ଭାରତରେ ବହୁ ଭାଷା ରହିଛି । ଏବଂ ଇଉରୋପରେ ପ୍ରାୟ ଭାଷା ଅନୁସାରେ କୁନି କୁନି ଦେଶଗୁଡ଼ିକର ସୃଷ୍ଟି କରା ହୋଇଛି । ଇଉରୋପର ଆୟତନ ଯେତିକି, ଭାରତର ଆୟତନ ପ୍ରାୟ ସେତିକି । ତେବେ,

ଭାରତ ବର୍ଷ ଯଦି ପ୍ରକୃତରେ ଗୋଟିଏ ଦେଶ ହୋଇ ରହିବାକୁ ସଂକଳ୍ପ କରିଥାଏ, ତେବେ ଇଉରୋପୀୟ ମହାଦେଶକୁ ଅନୁକରଣ କରି ରାଜ୍ୟଗୁଡ଼ିକ ଆପଣାକୁ ସତେ ଅବା ଖଣ୍ଡେ ଖଣ୍ଡେ ଦେଶ ବୋଲି ମନେକରି ପରସ୍ପର ଠାରୁ ପାରସ୍ପରିକ ଭାବ ଓ ବ୍ୟବହାରର କ୍ଷେତ୍ରରେ ଛଡ଼ା ଛଡ଼ା ହୋଇ ରହିଲେ ସେଥିରୁ ଏହି ଖଣ୍ଡଗୁଡ଼ିକୁ ତଥା ସମଗ୍ର ଦେଶ ଭାରତ ବର୍ଷକୁ ପ୍ରକୃତରେ କେଉଁ ହିତ ମିଳିବ ?

ଇଉରୋପରେ ମଧ୍ୟ ଏବେ ଏକାଠି ଗୋଟିଏ ସାଂସ୍କୃତିକ ଏକକ ରୂପେ ସମଗ୍ର ମହାଦେଶଟିକୁ ଗୋଟିଏ ବୋଲି ଅନୁଭବ କରିବାର ପ୍ରସ୍ତାବ ଆରମ୍ଭ ହୋଇଲାଣି । ଏହି ପ୍ରସ୍ତାବ ଅବଶ୍ୟ ତଥାକଥିତ ପଶ୍ଚିମ ଇଉରୋପ ପକ୍ଷରୁ ଉଠିଛି । ପୂର୍ବ ଇଉରୋପରେ ଏବେ କମ୍ୟୁନିଷ୍ଟ ସରକାର ଚାଲିଛି, ତେଣୁ ପଶ୍ଚିମ ଇଉରୋପର ଅଣକମ୍ୟୁନିଷ୍ଟ ସରକାରମାନେ ସେମାନଙ୍କୁ ସାଙ୍ଗରେ ନେବାକୁ ରାଜି ହେଉ ନାହାନ୍ତି । ପଶ୍ଚିମ ଇଉରୋପର ଅର୍ଥନୀତି ଇଉରୋପୀୟ କୋଠ ବଜାରଯାଏ ଆସିଲାଣି । ଇଉରୋପୀୟ ସଂସ୍କୃତି ଯୁଗ ଯୁଗ ଧରି ଦେଶୀୟ ନହୋଇ ମୂଳତଃ ଇଉରୋପୀୟ ହୋଇ ରହିଛି । ପ୍ରାୟ ଶହେ ବର୍ଷ ତଳେ ଫ୍ରାନ୍ସ ଓ ରୁଷିଆର କେତେଜଣ ଲେଖକ ଏବଂ ଭବିଷ୍ୟର ଅବଧାରକ ଇଉରୋପ ଗୋଟିଏ ହେଲେ ଯାଇ ଇଉରୋପର ଅସଲ ଉନ୍ନତି ସମ୍ଭବ ହେବ ବୋଲି କେତେକଥା କହିଥିଲେ ଓ ବେଶ୍ ଏକ ଉତ୍ସାହର ସୃଷ୍ଟି କରିଥିଲେ । ଏବେ ସେହି ସବୁ ପ୍ରସ୍ତାବ ଓ ଉତ୍ସାହ ସତେଅବା ରାଜନୀତି ପାଖରେ ଆସି ଅଟକି ଯାଇଥିବା ପରି ବୋଧ ହେଉଛି । ରାଜନୀତିକ ଉଗ୍ରତା ବେଳେବେଳେ ସବୁଠାରୁ ଅଧିକ ଦୁରାଗ୍ରହ ରଖିଥିବା ଏକ ଉଗ୍ରତା ବୋଲି ମନେ ହୋଇଥାଏ ଓ ସତ୍ୟଗୁଡ଼ିକୁ ଭଣ୍ଡୁର କରିଦେବାକୁ ବସିଥାଏ ସତ, ମାତ୍ର ତଥାପି ରାଜନୀତି କେବେହେଲେ ମନୁଷ୍ୟ ସମାଜର ଅସଲ ଆକାଂକ୍ଷା-ଗୁଡ଼ିକୁ ରୋକି ରଖି ପାରିବେ ନାହିଁ ।

ଭାରତବର୍ଷର ରାଜନୀତିକ ବିବେକ ସମଗ୍ର ଭାରତବର୍ଷକୁ ହିଁ ଆମ ଭାଗ୍ୟର ଅସଲ ପ୍ରତୀକ ବୋଲି ସ୍ୱୀକାର କରିନେଇଛି । ସେହି ପ୍ରତୀକଟି ଅନୁସାରେ ଆମେ ସମସ୍ତେ ବସି ଭାରତବର୍ଷ ସକାଶେ ଗୋଟିଏ ସମ୍ବିଧାନ ବି ତିଆରି କରିଛୁ ଓ ତାହାକୁ ଭାରତବର୍ଷରେ ଦିନେ ନା ଦିନେ ସମ୍ଭବ କରିବୁ ବୋଲି ଶପଥ ଗ୍ରହଣ କରିଛୁ । ଅର୍ଥାତ୍, ଇଉରୋପରେ ଯାହା ହୋଇନାହିଁ ଏବଂ ନିକଟ ଭବିଷ୍ୟତରେ କେବେ ହେବ ବୋଲି ମଧ୍ୟ ମୋଟେ ବୋଧ ହେଉନାହିଁ, ଆମେ ଭାରତବର୍ଷରେ

ତାହାକୁ ହିଁ ଆମ ମନ୍ତ୍ରୀ ସମିତିର ସର୍ବନିମ୍ନ ସନ୍ତକ ରୂପେ ସ୍ୱୀକାର କରିନେଇ ସାରିଛୁ । ତେବେ ଭାବ ଏବଂ ବ୍ୟବହାରର କ୍ଷେତ୍ରରେ ଆମେ ପରସ୍ପର ଠାରୁ ଏପରି ଅଲଗା ଅଲଗା ହୋଇ କାହିଁକି ରହିଛୁ ? ସ୍ୱାଧୀନତାର କୋଡ଼ିଏ ଦଶକ ପରେ ମଧ୍ୟ ଆମେ ସମଗ୍ର ଦେଶଲାଗି ରାଷ୍ଟ୍ରୀୟ ପ୍ରଶାସନଗତ ଯାବତୀୟ କାର୍ଯ୍ୟ ଚଳାଇବା ଲାଗି ସର୍ବସମ୍ମତ ଭାରତୀୟ ଭାଷାଟିଏ ଖୋଜି ବାହାର କରି ପାରିଲୁ ନାହିଁ । ଆମ ଦେଶର ସାହେବମାନେ ସେଥିଲାଗି ଆମ ଅନେକଙ୍କୁ ଅପାଂକ୍ତେୟ କରି ରଖି ଇଂରାଜୀ ଭାଷାକୁ ହିଁ ଏଠାରେ ଘରଜୁଆଁଇ କରି ରଖିବାଲାଗି ମସୁଧା କରୁଛନ୍ତି ଓ କେତେକ ପଣ୍ଡିତମାନେ କେତେ ସ୍ୱଚ୍ଛନ୍ଦ ଭାବରେ ଭାଷା ମଧ୍ୟରେ ସାର ଭାଷା ସଂସ୍କୃତରେ ହିଁ ଯାବତୀୟ ରାଜକାର୍ଯ୍ୟ ଚାଲୁ ବୋଲି ପରିପୂର୍ଣ୍ଣ ଉତ୍ସାହରେ କହୁଛନ୍ତି । ପୃଥିବୀଯାକ ଆମଆଡ଼କୁ ଅନାଇ ହସୁଛନ୍ତି, ଇଂରାଜମାନେ ହୁଏତ ସବୁଠାରୁ ଅଧିକ ହସୁଛନ୍ତି । ନିଜକୁ ସତକୁ ସତ ଏକ ନିଜ ବୋଲି ଅନୁଭବ କରି ପାରିବା ଲାଗି ମଧ୍ୟ ଏକ ସର୍ବନିମ୍ନ ପରିପକ୍ୱତା ଆବଶ୍ୟକ ହୋଇଥାଏ । ବ୍ୟକ୍ତିଗତ ଜୀବନରେ ବ୍ୟକ୍ତିଗତ ପରିପକ୍ୱତାର ଆବଶ୍ୟକତା ଥାଏ ଏବଂ ସାମୂହିକ ଜୀବନରେ ମଧ୍ୟ ଏକ ସାମୂହିକ ପରିପକ୍ୱତାର ଆବଶ୍ୟକତା ଥାଏ ଏବଂ ଏହି ଦ୍ୱିତୀୟ ପରିପକ୍ୱତାଟି ହେଉଛି ଗୋଟିଏ ନିର୍ଦ୍ଦିଷ୍ଟ ଭୂମିକୁ ଉତ୍ତୋଳିତ ହୋଇ ପାରିଥିବା ଏକ ସାମୂହିକ ସଚେତନତା ।

ଭାଷା, ଜାତି ଅଥବା ସଂସ୍କୃତି ଅନୁସାରେ ପୃଥିବୀରେ ଯେତେଠାରେ ରାଜ୍ୟ ଅଥବା ଦେଶଗୁଡ଼ିକର ସୀମା ନିର୍ଦ୍ଧାରଣ କରାଯାଇଛି, ତାହା କଦାପି ଗଣିତର ଗାର ଟାଣିଲପରି ଗୋଷ୍ଠୀଗୁଡ଼ିକ ଅନୁସାରେ ସୀମାଗୁଡିକର ନିର୍ଦ୍ଧାରଣ କରି ପାରି ନାହିଁ । ଭାରତରେ ମଧ୍ୟ ଭାଷା ସୂତ୍ରରେ ରାଜ୍ୟଗୁଡିକର ଗଠନ କରା-ଯାଇଛି । ତାହାର ଅର୍ଥ ନୁହେଁ ଯେ ଓଡ଼ିଶାରେ କେବଳ ଓଡ଼ିଆ ଭାଷାଭାଷୀ ରହିଛନ୍ତି ଓ ଆନ୍ଧ୍ରରେ କେବଳ ତେଲୁଗୁ ଭାଷାଭାଷୀମାନେ ରହିଛନ୍ତି । ହରିଆ-ନାରେ କେବଳ ହିନ୍ଦୁ ରହିଛନ୍ତି ଓ ପଞ୍ଜାବରେ କେବଳ ପଞ୍ଜାବୀ ରହିଛନ୍ତି । ଓଡ଼ିଶାର ଜଙ୍ଗଲରୁ ତେଲୁଗୁମାନେ କାଠ କାଟି ନେଇଗଲେ, ଆନ୍ଧ୍ର ସରକାର ଓଡ଼ିଶା ସୀମାର ଭିତରେ ପଶି ଖଜଣା ଆଦାୟ କଲେ, ବିହାର ସରକାର ଓଡ଼ିଆଙ୍କ ପ୍ରତି ଅବିଚାର କଲେ, ଆମର ଖବର କାଗଜ ମାନଙ୍କରେ ଯେତେ-ବେଳେ ଏହି ସବୁ ଖବର ବାହାରେ ଓ ଏକ ନିର୍ଦ୍ଦିଷ୍ଟ ପ୍ରକାରର ତପ୍ତତା ସୃଷ୍ଟି କରେ, ଭାଷାର ସୂତ୍ରରେ ରାଜ୍ୟର ଗଠନ ହୋଇଥିଲେ ମଧ୍ୟ ଭାଷା ତଥା ଗୋଷ୍ଠୀ-

ସମ୍ବନ୍ଧୀ ସମସ୍ୟାଗୁଡ଼ିକର ସମ୍ପୂର୍ଣ୍ଣ ସମାଧାନ ଯେ ତଥାପି ହୋଇନାହିଁ, ସେତେବେଳେ ସେ ସବୁ ତାହାର ସୂଚନା ଦେଇଥାଏ । ଆମ ପୃଥିବୀରେ ମାନବିକ ମୂଲ୍ୟଗୁଡ଼ିକର ସାର୍ଥକ ପ୍ରତିଷ୍ଠା ହୋଇପାରିବା ପର୍ଯ୍ୟନ୍ତ ଆମେ ଆପଣାର ପ୍ରାପ୍ୟ ସକଳ ଅନୁରକ୍ତି ଏବଂ ଅନୁରାଗ ଗୁଡ଼ିକୁ ଆମର ସାନସାନ ଗୋଷ୍ଠୀ ସହିତ ରହିଥିବା ମୁଗ୍ଧ ତଥାକଥିତ ନାନା ଅଧିକ ମହତ୍ତ୍ୱପୂର୍ଣ୍ଣ ସମ୍ବନ୍ଧଗୁଡ଼ିକ ସହିତ ବାନ୍ଧି ରଖିବା ସକାଶେ ହିଁ ଆମର ଚାରିପାଖରୁ ଅପେକ୍ଷାକୃତ ଅଧିକ ପ୍ରରୋଚନା ଏବଂ ମନ୍ତ୍ରଣା ନିଶ୍ଚୟ ପାଉଥିବା ଓ ଅଧିକତର ଭାବରେ ସେଗୁଡ଼ିକ ଦ୍ୱାରା ହିଁ ପରିଚାଳିତ ହେଉଥିବା ।

ଓଡ଼ିଶା ବାହାରେ ଯେଉଁ ଓଡ଼ିଆମାନେ ଅନ୍ୟ ରାଜ୍ୟଗୁଡ଼ିକରେ ରହିଛନ୍ତି, ସେମାନେ କ'ଣ ବିଦେଶରେ, ଶତ୍ରୁ ହାତରେ ବା କୌଣସି ବନ୍ଦୀଶାଳାରେ ଅଛନ୍ତି ? ଓଡ଼ିଶାର ସୀମା ଭିତରେ ଉପାନ୍ତ ଅଞ୍ଚଳ ମାନଙ୍କରେ ଯେଉଁ ବଙ୍ଗଭାଷୀ, ବିହାରୀ ଅଥବା ତେଲୁଗୁମାନେ ଅଛନ୍ତି, ସେମାନେ କ'ଣ ଆମ ଘରେ ବନ୍ଦୀ ହୋଇ ରହିଛନ୍ତି, ଶତ୍ରୁ ହାତରେ ଅଛନ୍ତି ? ଗଣତନ୍ତ୍ରର ଆଲୋଚନା କରିବାକୁ ଯାଇ ଜଣେ ଇଉରୋପୀୟ ଗବେଷକ ପଣ୍ଡିତ ମତ ଦେଇ କହିଛନ୍ତି ଯେ, କୌଣସି ରାଜ୍ୟ ବା ରାଜ୍ୟ ଖଣ୍ଡରେ ବାସ କରୁଥିବା ଏକ ସଂଖ୍ୟାଗରିଷ୍ଠ ଗୋଷ୍ଠୀ ସେହି ରାଜ୍ୟରେ ରହିଥିବା ସଂଖ୍ୟା ଲଘୁମାନଙ୍କ ପ୍ରତି ଯେଉଁ ପ୍ରକାରର ବ୍ୟବହାର ଦେଖାଏ, ତାହାର ଦ୍ୱାରା ହିଁ ସେଠାରେ ଚଳିବ ବୋଲି ସ୍ୱୀକୃତ ହୋଇଥିବା ଗଣତନ୍ତ୍ରର ଅସଲ ମାନ ଓ ମର୍ଯ୍ୟାଦାଟି ଅନେକାଂଶରେ ନିରୂପିତ ହୋଇଥାଏ । ଆମ ରାଜ୍ୟରେ ଯେଉଁ ସଂଖ୍ୟାଲଘୁ ଅନ୍ୟ-ଭାଷାଭାଷୀ ଅଛନ୍ତି, ଅଥବା ଆମ ଭାଷାଭାଷୀ ଯେଉଁମାନେ ଅନ୍ୟ କୌଣସି ରାଜ୍ୟରେ ସଂଖ୍ୟାଲଘୁ ଭାବରେ ରହିଛନ୍ତି, ସେମାନେ ଓଡ଼ିଶା, ବଙ୍ଗ, ଅଙ୍ଗ ଅଥବା ଆନ୍ଧ୍ର ଯେଉଁ ରାଜ୍ୟରେ ବାସ କରୁଥାନ୍ତୁ ପଛକେ, ସେମାନେ ସମସ୍ତେ ଏହି ଭାରତବର୍ଷରେ ହିଁ ଅଛନ୍ତି । ଭାରତବର୍ଷର ଯେ କୌଣସି ରାଜ୍ୟରେ ଯେ କୌଣସି ଭାଷାଭାଷୀ ରହୁଥାଉ ପଛକେ ଆମର ଅସଲ ସାଧାରଣ ଭୂଇଁଟିରେ ତାର ଚେର ଅବଶ୍ୟ ରହିଛି ଏବଂ ତେଣୁ ଆମେ ସମ୍ପୃକ୍ତ ସମସ୍ତ ତାକୁ ମୂଳତଃ ସେହି ପରିଚୟରେ ହିଁ ଆମ ନିଜ ସହିତ ସାମିଲ କରିନେବା; ଆମର ସର୍ବୋତ୍ତମ ସାଂସ୍କୃତିକ ମୂଲ୍ୟଗୁଡ଼ିକ ଆମର ସାମାଜିକ ଜୀବନ-ବ୍ୟବସ୍ଥାଗୁଡ଼ିକୁ ସତକୁସତ ଭେଦିକରି ରହିଥିଲେ ହୁଏତ ଆମେ ଅତ୍ୟନ୍ତ ସ୍ୱାଭାବିକ ଭାବରେ ଠିକ୍ ତାହାହିଁ ଅନୁଭବ କରୁଥାନ୍ତୁ । ମାତ୍ର, ଭାରତବର୍ଷ ଯେପରି ତିଆରି ହେବା କଥା, ତାହା

ଘରକୁ ଘର କ'ଣ ସେହିପରି ତିଆରି ହେଲଣି କି ? ଏବଂ ଭାରତବର୍ଷ ଯଦି ତାହା ହୋଇ ପାରୁନାହିଁ, ତେବେ ଓଡ଼ିଶା ତିଆରି ହୋଇ ପାରିଲାଣି ବୋଲି କିଏ କହିପାରିବ ?

ଭାଷା ସୂତ୍ରରେ ରାଜ୍ୟଗୁଡ଼ିକର ଗଠନ ହୋଇଥିବା ସତ୍ତ୍ୱେ ପ୍ରତ୍ୟେକ ରାଜ୍ୟରେ ଯେ ଅନ୍ୟ ଭାଷାଭାଷୀମାନେ ତଥାପି ରହିଛନ୍ତି, ଆଉ ଏକ ଦୃଷ୍ଟିରୁ ବିଚାର କଲେ ତାହା ହୁଏତ ଆମ ସମସ୍ତଙ୍କ ଲାଗି ଏକ ବଡ଼ ସୁଯୋଗ ବୋଲି ଅନୁଭୂତ ହେବ । ରାଜ୍ୟ ଉପାନ୍ତର ଯେଉଁ ଭାଗରେ ଏପାଖ ସେପାଖ ହୋଇ ଦୁଇଟି ଭାଷାଭାଷୀ ବାସ କରୁଛନ୍ତି, ହୁଏତ ଶତାବ୍ଦୀ ଶତାବ୍ଦୀ ଧରି ବାସ କରି ଆସିଛନ୍ତି, ସେହି ଭାଗଟି ଦୁଇ ରାଜ୍ୟ ମଧ୍ୟରେ ଉପଯୁକ୍ତ ସାଂସ୍କୃତିକ ଆଦାନପ୍ରଦାନ ଲାଗି ଏକ ସ୍ୱାଭାବିକ ସେତୁ ଭଳି କାର୍ଯ୍ୟ କରି ପାରିବ । ଭାରତ ବର୍ଷରେ ଯେଉଁମାନେ ଶିକ୍ଷିତ ହୋଇଥିବାରୁ ଆପଣାକୁ ଶିଷ୍ଟ ମଧ୍ୟ ବୋଲାନ୍ତି, ସେମାନେ ନିଜକୁ ଇଉରୋପ ସହିତ ଓ ଆହୁରି ନିର୍ଦ୍ଦିଷ୍ଟ କରି କହିଲେ ଇଂରାଜୀ ଭାଷା ସହିତ ଯେତେ ପରିମାଣରେ ଛନ୍ଦି କରି ରଖିଥାନ୍ତି, ଆପଣାର ପ୍ରତିବେଶୀ ଭାଷା ଓ ତାହାର ବାହକ ଜାଅନ୍ତା ମଣିଷମାନଙ୍କ ସହିତ ତଥା ସେମାନଙ୍କର ସାଂସ୍କୃତିକ ବୈଶିଷ୍ଟ୍ୟ-ଗୁଡ଼ିକ ସହିତ ସେତେ ପରିଚିତ ହୋଇ ପାରିନାହାନ୍ତି । ଉଦାହରଣ ସ୍ୱରୂପ, ଯେଉଁମାନେ ଓଡ଼ିଆରେ ସାହିତ୍ୟ କରୁଛନ୍ତି ଓ ଆପଣାର ଧାରୁଟିକୁ ସର୍ବୋପରି ଏକ ସାଂସ୍କୃତିକ ଧାରୁ ବୋଲି ମନେ କରୁଛନ୍ତି । ସେମାନେ ଆନ୍ଧ୍ରର ସାହିତ୍ୟ ସହିତ କୌଣସି ପରିଚୟ ଲାଭ କରିନାହାନ୍ତି । ତେଲୁଗୁ ଭାଷାରୁ ଆଧୁନିକ କାଳର ହୁଏତ ଖଣ୍ଡିଏ ହେଲେ ସାହିତ୍ୟ ଗ୍ରନ୍ଥ ସିଧା ଓଡ଼ିଆକୁ ଅନୁବାଦ କରା ହୋଇନାହିଁ; ଓଡ଼ିଶାରେ ଆମ ସାହିତ୍ୟିକ ନିବନ୍ଧକାରମାନେ ନିଜ ପ୍ରତିପାଦ୍ୟ ଗୁଡ଼ିକର ସମର୍ଥନରେ ଇଂରାଜୀରୁ ଗଉଣି ଗଉଣି ସନ୍ଦର୍ଭ ଆଣି ମାପିଦେଇ ପାରୁଥିଲେ ମଧ୍ୟ ତେଲୁଗୁ, କନ୍ନଡ଼୍, କିମ୍ବା ଅହମୀୟା ଭାଷାରୁ ଗୋଟିଏ ହେଲେ ନଜିର ଦେଇ ପାରୁନାହାନ୍ତି, ଏହା ଏକ ଦୁର୍ଭାଗ୍ୟର କଥା । ଏକାଠି ଥାଇ ମଧ୍ୟ ଆମେ ପରସ୍ପର-ଠାରୁ କିପରି ଦୂରନ୍ତରା ହୋଇ ରହିଛୁ, ଏହା କେବଳ ତାହାର ପ୍ରତିପାଦନ ହିଁ କରିଦେଉଛି । ଉପାନ୍ତ ଅଞ୍ଚଳରେ ବହୁ ଦ୍ୱିଭାଷୀ ଅଛନ୍ତି, ସେମାନଙ୍କୁ ଲୋଡ଼ି, ଆବିଷ୍କାର କରାଯାଇ ପାରନ୍ତା । ଉପାନ୍ତରେ ଅବସ୍ଥିତ ଉଚ୍ଚ ଶିକ୍ଷାନୁଷ୍ଠାନ ମାନଙ୍କରେ ଦୁଇପଟର ଭାଷା ଓ ସାହିତ୍ୟକୁ ସାଉଁଟି ତାହାର ତୁଳନାତ୍ମକ ଆଲୋଚନା ଓ ଗବେଷଣା ହୋଇପାରନ୍ତା । ଏଥିରୁ ସେଥିକୁ ଏବଂ ସେଥିରୁ

ଏଥିକୁ ଅନୁବାଦମାନ ହୁଅନ୍ତି । ଉପାନ୍ତର ସାହିତ୍ୟାନୁଷ୍ଠାନ ମାନଙ୍କରେ ଦୁଇ ସାହିତ୍ୟର ଅନୁରାଗୀ ଓ ଅବଗାହୀମାନେ ଏକତ୍ର ବସନ୍ତେ, ଅନୁଭବଗୁଡ଼ିକର ଦିଆନିଆ ହୁଅନ୍ତା । ସଙ୍ଗୀତର ଅବସରଗୁଡ଼ିକ ମଧ୍ୟ ଏକାଠି ବସନ୍ତା । ଏବଂ, ଉପାନ୍ତ ଅଞ୍ଚଳର ଅନ୍ତତଃ ଶିକ୍ଷିତମାନେ ଦୁଇଟିଯାକ ଭାଷାରେ ଅନୁରାଗ ରଖନ୍ତେ, ନିଜ ଭାଷା ସହିତ ଅନ୍ୟଟିକୁ ଶିଖନ୍ତେ, ବ୍ୟୁତ୍ପତ୍ତି ଲାଭ କରନ୍ତେ । ତେବେ ଅତି ସ୍ୱାଭାବିକ ଭାବରେ ଅସଲ ସେତୁଟି ସମ୍ଭବ ହୋଇ ପାରନ୍ତା ।

ଆନ୍ଧ୍ରପ୍ରଦେଶର ସନ୍ଥ ଶ୍ରୀଯୁକ୍ତ ଭଦ୍ରାଚଳ ରାମଦାସଙ୍କର 'ଶତକ'ରୁ ଏଠାରେ ଗୋଟିଏ ପଦର ଉଲ୍ଲେଖ କରି ଯାଇପାରେ । ସେଥିରେ ସେ ଲେଖିଛନ୍ତି, "ଭ୍ରମରେ ପଡି ମୂର୍ଖ ବାନାମଧ୍ୟରେ ବରକୋଳ କିଣିଲା ଭଳି ମୁଁ ଦୁରଭ୍ୟାସରେ ପଡ଼ି ଦୁରାତ୍ମାଙ୍କ ଲାଗି ମୋର କାବ୍ୟକୁ ଉତ୍ସର୍ଗ କରି ପ୍ରତାରିତ ହେଲି । ମୋ' ଜିହ୍ୱାକୁ ଯେପରି ପବିତ୍ରତା ସହଜରେ ଆସିବ, ମୋର କବିତାରୁ ଯେପରି ବାକ୍-ସୁଧାରସ ହିଁ ବରଷିବ, ହେ ଭଦ୍ରଗିରି ଦାଶରଥି କରୁଣାପୟୋନିଧି ! ମୋ'ର କାବ୍ୟ ରଙ୍ଗମଞ୍ଚରେ କେବଳ ତୁମେହିଁ ସଦୟ ହୋଇ ନୃତ୍ୟ କରୁଥାଅ !" ତେଲୁଗୁ ଭାଷାରେ ଲିଖିତ ହୋଇଛି ବୋଲି ଏହା କ'ଣ କେବଳ ତେଲୁଗୁ ସାହିତ୍ୟ ? ଓଡ଼ିଆ ଭାଷାରେ କବି ଦୀନକୃଷ୍ଣ ଅଥବା କବିସୂର୍ଯ୍ୟ କୃଷ୍ଣ-ପ୍ରୀରତି ବିଷୟରେ ଯାହା କିଛି ଲେଖିଛନ୍ତି, ତାହା କ'ଣ କେବଳ ଓଡ଼ିଆ ସାହିତ୍ୟ ? ନା-ଏଗୁଡ଼ିକ ସବାଆଗ ସାହିତ୍ୟ, ତାପରେ ଯାଇ ଯେଉଁ ଭାଷାରେ ଲିଖିତ ହୋଇଛନ୍ତି, ସେହି ଭାଷାର ସାହିତ୍ୟ । ଭାରତବର୍ଷରେ ଭାଷା ଭାଷା ଓ ରାଜ୍ୟ ରାଜ୍ୟ ଭିତରେ ଠିକ୍ ଏହିଭଳି ହୋଇପାରନ୍ତା । ମମତାମାନେ ମଣିଷଙ୍କୁ ଇଚ୍ଛା କରନ୍ତେ, ତେବେ ଭାଷାର ଅର୍ଗଳ ବା ଏପରିକି ରାଜନୀତିର ଅର୍ଗଳଟି ମଧ୍ୟ କଦାପି ମଣିଷ ଭିତରେ ବାଟ ଓଗାଳି ବାଧା ହୋଇ ଠିଆ ହୋଇ ପାରନ୍ତା ନାହିଁ । ଆମର ଏହି ସ୍ଥାନୀୟ ଦର୍ପଣଟି ଉପରେ ମଧ୍ୟ ଆମେ ସମଗ୍ର ଭାରତବର୍ଷର ଅନ୍ତଃ ମଣ୍ଡଳଟିକୁ ଆବିଷ୍କାର କରିପାରନ୍ତେ । ଆଗେ ରାଜନୀତି ସର୍ବପ୍ରଧାନ ନଥିଲା, ସମ୍ବନ୍ଧ ଯୋଡ଼ିବା ହିଁ ସର୍ବପ୍ରଧାନ ହୋଇ ରହିଥିଲା । ଓଡ଼ିଶାର ମହିମାଧର୍ମ ଯଦି ପ୍ରାୟ ଶତେବର୍ଷ ତଳେ କେଡ଼େ ସ୍ୱାଭାବିକ ଭାବରେ ଆନ୍ଧ୍ର ଭିତରକୁ ପ୍ରସାରିତ ହୋଇଯାଇ ପାରିଲା, ଭୀମଭୋଇ ଓଡ଼ିଆ ଭାଷାରେ ନିଜର ପଦଗୁଡ଼ିକୁ ଲେଖିଥିଲେ ମଧ୍ୟ ତଥାପି ସିଏ ଯେ କେବଳ ଓଡ଼ିଶାର ନୁହନ୍ତି, ସେକଥାଟି କେଡ଼େ ସହଜରେ ଜନାଭବର ସ୍ତରରେ ଗୃହୀତ ହୋଇ ପାରିଲା, ତେବେ ଆମର ଏହି ଘରପାଖରେ ଥିବା

ଭଦ୍ରାଚଳର ସନ୍ଥ ରାମଦାସ ଘରର ଆଦର ପାଇ ଓଡ଼ିଶା ଭିତରକୁ ନଆସି ପାରିବେ କାହିଁକି ?

ଭାରତବର୍ଷର ଅସଲ ସମସ୍ୟା ଭାଷାର ସମସ୍ୟା ନୁହେଁ, ସମ୍ପଦ ବା ସମ୍ପତ୍ତି ବଢ଼ାଇବାର ସମସ୍ୟା ନୁହେଁ, ଆମେ ସାଧାରଣତଃ ରାଜନୀତି କହିଲେ ଯାହା ବୁଝୁ, ତାହା ସେହି ରାଜନୀତିର ସମସ୍ୟା ମଧ୍ୟ ନୁହେଁ, ଏହି ଦେଶରେ ସର୍ବମୂଳ ଓ ସର୍ବପ୍ରଧାନ ସମସ୍ୟା ହେଉଛି ମାନବ-ସ୍ୱୀକୃତିର ସମସ୍ୟା । ଭାରତୀୟ ସମାଜ-ପରମ୍ପରାରେ ମଣିଷ ମାନଙ୍କୁ ସବୁ ମଣିଷଙ୍କୁ କେବେହେଲେ ସ୍ୱୀକାର କରା ଯାଇନଥିଲା । ଏଠାରେ ସବୁକାଳେ ଉତ୍ତମଶ୍ରେଣୀ ରହିଥିଲେ ଅଧମଶ୍ରେଣୀ ବି ରହିଥିଲେ । ସାମନ୍ତ ଥିଲେ, ସେବାକାରୀମାନେ ବି ରହିଥିଲେ । ଏକ ନ୍ୟାୟର ଭାଗ୍ୟବାଦ-ଶାସ୍ତ୍ରର ରୂପ ଧାରଣ କରି ସମାଜର ଶାସନ କରୁଥିଲା । ଅଳପ ମଣିଷ ଟେଲବଂଶର ହୋଇ ବଢ଼ିବେ ବୋଲି ଅନେକ ମଣିଷଙ୍କୁ ଅଳପ ଓ ନ୍ୟୂନ କରି ରଖା ଯାଇଥିଲା । ଆମ ସ୍ୱାଧୀନ ଭାରତରେ ସର୍ବପ୍ରଥମେ ସେହି ଅଭାବଟିର ପୂରଣ କରାଯାଇ ଥାଆନ୍ତା । ପ୍ରଧାନତଃ ସେହି କାର୍ଯ୍ୟଟିର ପୂରଣ କରିବା ଲାଗି ଦେଶକୁ ରାଜନୀତିକ ସ୍ୱାଧୀନତା ଆସିଥିଲା ଓ ଏକ ଜାତୀୟ ମୁକ୍ତିସଂଗ୍ରାମ ଲଢ଼ା ଯାଇଥିଲା । ଦେଶ ସ୍ୱାଧୀନ ହେବାପରେ ନ୍ୟାୟତଃ ଓ ନିୟମତଃ ଦେଶର ପ୍ରତ୍ୟେକ ମନୁଷ୍ୟକୁ ପୂର୍ଣ୍ଣ ନାଗରିକତ୍ୱ ପ୍ରାପ୍ତ ହେବାର ଅଧିକାର ମିଳି ପାରିଥିଲେ ମଧ୍ୟ, ଯେଉଁସବୁ ଅର୍ଥନୈତିକ ଏବଂ ସାମାଜିକ ମୂଳବାଧାଗୁଡ଼ିକୁ ଦୂର କରିବା ଦିଗରେ ସୁନିର୍ଦ୍ଦିଷ୍ଟ ପଦକ୍ଷେପମାନ ଗ୍ରହଣ କରିଥିଲେ ଦେଶରେ ସତକୁ ସତ ସେହିଭଳି ଏକ ପରିବେଶ ଓ ପ୍ରତୀତି ସମ୍ଭବ ହୋଇ ପାରିଥାନ୍ତା, ସେହି ବାଧାଗୁଡ଼ିକ ଯେଉଁପରି ଥିଲା ପ୍ରାୟ ଠିକ୍ ସେହିପରି ରହିଲା । ସାମନ୍ତମାନଙ୍କର ସଂଖ୍ୟା ବଢ଼ିଲା, ଗରୁମାନେ ଅଧିକ ଗରୁ ହେଲେ । କ୍ଷମତା ଠାକୁର ହୋଇ ବସିଲା । ଶିକ୍ଷିତମାନେ ଖାନ୍ତ ହେଲେ । ସେମାନେ ଠାକୁରମାନଙ୍କ ଠାରୁ କ୍ଷମତାଟାକୁ ହିଁ ଅଧିକ ମାନିଲେ । କୋଟି ପ୍ରମାଣେ ପଇସା ଆସିଲା, ଖର୍ଚ୍ଚହେଲା, ମାତ୍ର ଗଠନଗୁଡ଼ାକୁ ସ୍ୱୀକୃତ ଲକ୍ଷ୍ୟଗୁଡ଼ିକର ଅନୁରୂପ କରି ତିଆରି କରାଯାଇ ନଥିବାରୁ ପଇସାକୁ ଭୂତ ଖାଇଗଲା । ଫଳରେ ମାନବ ଅସ୍ୱୀକୃତ ହୋଇ ରହିଲା । ଉପରମାନେ ଅଲଜୁକ ହେଲେ, ତଳ ତାଟକା ହୋଇ ଅନାଇ ଏବଂ ଭାଗ୍ୟର ଭୋଗ ସରିନାହିଁ ବୋଲି ବୁଝି ନୀରବ ହୋଇ ରହିଲା ।

ଭାରତବର୍ଷରେ ଶତକଡ଼ା ପ୍ରାୟ ସତୁରିଭାଗ ମଣିଷ ହେଉଛନ୍ତି ନିରକ୍ଷର । ଭାରତରେ ଯେତିକ, ଓଡ଼ିଶାରେ ଶତକଡ଼ା ତାଠାରୁ ଆହୁରି ବେଶୀ । ସରକାରୀ ହିସାବରକ୍ଷୀମାନେ ଏବେ ଦାରିଦ୍ର୍ୟର ସୀମାରେଖା ବୋଲି ଯେଉଁ ଦଣ୍ଡିକୁ ସ୍ଥିର କରିଛନ୍ତି, ଓଡ଼ିଶାର ତିନିଭାଗରୁ ପ୍ରାୟ ଦୁଇଭାଗରୁ ଅଧିକ ମଣିଷ ତାହାର ତଳେ ରହିଛନ୍ତି । ଦେଶରେ ଆୟ ବଢ଼ୁଛି, ଏଣେ ଦରିଦ୍ରମାନେ ବଢ଼ୁଛନ୍ତି; ଉତ୍ପାଦନ ବୃଦ୍ଧି ପାଉଛି, ତେଣେ ସାଧାରଣ ସବାତଳ ମଣିଷମାନଙ୍କର କ୍ରୟଶକ୍ତିର ସାମର୍ଥ୍ୟ ହ୍ରାସ ହେବାରେ ଲାଗିଛି । ଜମିରେ ଧଳା ନାଲି କେତେ ରଙ୍ଗର କୁହୁକ ସାରମାନ ପଡ଼ି କୁଅଡ଼େ ସୁନା ଫଳିଲଣି, ତେଣେ ଅଧିକରୁ ଅଧିକ କୃଷକ କୃଷି-ମୂଲିଆ ହେଉଛନ୍ତି । ଅଧିକରୁ ଅଧିକ ମଣିଷ ଗାଆଁ ଛାଡ଼ି, ତଥା କଥିତ ସହରମାନଙ୍କୁ ପଳାଇ ଆସୁଛନ୍ତି, ସହରର ଅଲକ୍ଷଣାମାନଙ୍କ ସହିତ ଆସି ସାମିଲ୍ ହେଉଛନ୍ତି । ଦେଶର ସବୁ ପିଲା ଏବେ ମଧ୍ୟ ଇସ୍କୁଲ ମାଡ଼ିନାହାନ୍ତି । ଆମ ଇସ୍କୁଲମାନଙ୍କରେ କେବେ ଦେଶର ସବୁଯାକ ପିଲାଙ୍କ ପାଇଁ ଜାଗା ହେବ, ଆମ ଶିକ୍ଷା ଘରର ସାହୁକାରମାନେ ହିସାବ କରି ମଧ୍ୟ ସେକଥା କହି ପାରୁନାହାନ୍ତି । ଆମ ଦେଶରେ ଏକଦା 'ନୀତିଶତକ' ବୋଲି ଏକ ଗ୍ରନ୍ଥ ଲେଖା ଯାଇଥିଲା । ଯେଉଁମାନେ ନୀତିରେ ବିଶ୍ୱାସ ରଖନ୍ତି ଓ ନୀତିରେ ରହନ୍ତି, ସେମାନଙ୍କୁ ଶାସ୍ତ୍ରକାରମାନେ ସାଧୁ ବା ସୁଜନ ବୋଲି କହି ଯାଇଛନ୍ତି । ଏବେ ଆମ ଦେଶରେ ଆସନ-ଗୁଡ଼ାକ ହିଁ ଆଖିକୁ ସାଧୁ ପରି ଦିଶୁଛି ସତ, ମାତ୍ର, ସେଥିରେ ବସିଥିବା ମଣିଷଟି ସାଧୁ କି ଅସାଧୁ, ସେକଥା ଠଉରାଇବାକୁ କାହାରି ହେଲେ କୁଣ୍ଟ ପାଉନାହିଁ । ଏପରି ଏକ ଦେଶକୁ ଯିଏ ତଥାପି ନିଜର ଦେଶ ବୋଲି ଅନୁଭବ କରୁଥିବ, ଯିଏ ସବାଆଗ ଏଠି ଗୁହାଳ ଗୁଡ଼ାକୁ ସଫା କରିବାଲାଗି ଶପଥ ନେବ । ଯିଏ ଓଡ଼ିଆ ହୋଇଥାଉ, ସାମନ୍ତସିଂହାର ହୋଇଥାଉ କିମ୍ବା ମୀର ଖାରବେଳ ବା ଖାଜ ପଟ୍ଟନାୟକ ଯାହା ହୋଇଥାଉ ପଛକେ, ନିଜ ଆନୁଗତ୍ୟ ଗୁଡ଼ିକର ଅସଲ ଥାନରେ ଥିରୁ ହୋଇଥିଲେ ଯିଏ ଏହି କ୍ଷେତ୍ରରେ ଆଦୌ କିଛି ହେଲେ କରି ପାରିବ ନାହିଁ ।

ମାନବ ସ୍ୱୀକୃତି କହିଲେ ପ୍ରକୃତରେ ସବାଆଗ କ'ଣ ସବୁ ବୁଝାଏ ? ସେହି ଉତ୍କଳ ସମ୍ମିଳନୀର କାଳରେ ଗୋପବନ୍ଧୁ ଥରେ ଏହି ଓଡ଼ିଶାରେ ଘୋଷଣା କରିଥିଲେ, "ଆମ୍ଭେମାନେ ସର୍ବପ୍ରଥମେ ମନୁଷ୍ୟ, ତା ପରେ ଭାରତୀୟ ଏବଂ ସର୍ବ ଶେଷରେ ଓଡ଼ିଆ ।" ଏପରି କହିବା ଦ୍ୱାରା ଗୋପବନ୍ଧୁ କ'ଣ ଜଣେ ଜଣେ

ଓଡ଼ିଆ ହିସାବରେ ଆମର ପରିଚୟକୁ ନ୍ୟୂନତର ବୋଲି ଦେଖାଇବାକୁ ଇଚ୍ଛା କରିଥିଲେ କି ? ହୁଏତ ସତ କଥାଟି ହେଉଛି, ଆମେ ଏହି ବାହାର ଭୂଗୋଳ ଅଥବା ବନ୍ଧନତା ଗୁଡ଼ିକର ମାର୍କା ଅନୁସାରେ ଯାହା ହୋଇଥାଉ ପଛକେ, ସେହି ଖୋଳ ଗୁଡ଼ିକ ଭିତରକୁ ଅଧିକରୁ ଅଧିକ ଗଭୀର ଯାଏ ଆପଣାର ପରିଚୟଟିକୁ ଅନୁଭବ କରିବାର ପ୍ରକ୍ରିୟାରେ ଆମେ ଶେଷରେ ଯେଉଁଠାରେ ଯାଇ ପହଞ୍ଚିବା, ଆମର ସେହି ପରିଚୟଟି ହେଉଛି ଆମର ମନୁଷ୍ୟର ପରିଚୟ । ପରିଚୟର ସେହି ଭୂମିରେ ଆମେ ସମସ୍ତେ ପରସ୍ପରର ସଧର୍ମୀ ପରସ୍ପରର ସହଯୋଗୀ ଏବଂ ପରସ୍ପରର ସମକକ୍ଷ । ନିଜ ଅନୁଭବ ତଥା ଅନୁରାଗକୁ ବଢ଼ାଇ ଆମ ଭିତରୁ ଯିଏ ସେଯାଏ ପହଞ୍ଚି ପାରିଥିବ, ସେହି ସାର୍ଥକ ଭାବରେ ଆଜି ସବୁକିଛି ହୋଇପାରିବ । ଅର୍ଥାତ୍, ସାର୍ଥକ ମନୁଷ୍ୟ ହୋଇଥିଲେ ଜଣେ ସାର୍ଥକ ଭାରତୀୟ ହୋଇପାରିବ, ଜଣେ ସାର୍ଥକ ଓଡ଼ିଆ ମଧ୍ୟ ହୋଇପାରିବ । ମାତ୍ର, ସେଇ ଅସଲ ପରିଚୟଟିକୁ ବରଣ କରି ନ ପାରିଥିବା ପର୍ଯ୍ୟନ୍ତ ଯିଏ ଯେତେବେ ଆଡ଼ମ୍ବର କମ୍ବା ଉଗ୍ରତାର ସହିତ ଯେତେ ସନ୍ତକ ଅଥବା ଯେତେ ସମ୍ବୋଧନକୁ ମଥାରେ ଗଣ୍ଠି କରି ଅଥବା ଅଣ୍ଟାକୁ ଘାଗୁଡ଼ି କରି ପିନ୍ଧିଥାଉ ପଛକେ, ସିଏ ମୂଳତଃ ଦୈନ୍ୟ ହୋଇ ରହିଯିବ, ସିଏ ସଂସାରର ହାନି ହିଁ କରିବ । ଆମର ଏହି ବର୍ତ୍ତମାନ ପୃଥିବୀରେ ଉଚ୍ଚ ସମର୍ଥତା ହାସଲ କରିଥିବା ଏବଂ ଉଚ୍ଚ କ୍ଷମତାରେ ବସିଥିବା ଅମଣିଷ ତ ମାଳ ମାଳ ରହିଛନ୍ତି, ମାତ୍ର ଭିତରେ ନିଜର ମନୁଷ୍ୟ—ପରିଚୟଟିକୁ ସବାମୂଳ କରି ଧରିଥିବା ସେହି ପରିଚୟର ନେତ୍ରଟିକୁ ପକାଇ ଜଗତର ଅନ୍ୟ ମଣିଷମାନଙ୍କୁ ଦେଖୁଥିବା ଅସଲ ମଣିଷ କେତେଜଣ ଅଛନ୍ତି ? ତେଣୁ ବାହାରର ଏହି ଯାବତୀୟ ଧନ, ମାନ ଓ ଦର୍ପର ପ୍ରଦର୍ଶନ ଭିତରେ ଅସଲ ସଂସ୍କୃତି ଓ ଅସଲ ସଂସ୍କାର ପ୍ରକୃତରେ କେତେ ଟିକିଏ ରହିଛି ? କେତେ ତୋରଣ ଓ ନିର୍ମାଣ ଚକଚକ ହୋଇ ଚତୁର୍ଦ୍ଦିଗରେ ବସିଥିବା ଦରବାର ଗୁଡ଼ାକରେ ଅସଲ ପରିମଳଟି ପ୍ରକୃତରେ କେତେ ଟିକିଏ ରହିଛି ? ଓଡ଼ିଶାକୁ କ'ଣ ଏହି କ୍ଷେତ୍ରରେ ଆମେ ଏକ ବ୍ୟତିକ୍ରମ ବୋଲି କହିପାରିବା ?

ଓଡ଼ିଶାରେ ମଧ୍ୟ ଭାଗ୍ୟବାନ୍ ଅଳପ ମଣିଷ ଭାଗ୍ୟରୁ ବଞ୍ଚିତ ଅନେକ ମଣିଷଙ୍କୁ ମାଟିଗୋଡ଼ ପରି ହେୟ ଚକ୍ଷୁରେ ଦେଖନ୍ତି । ସାରା ପୃଥିବୀ ପରି ଓଡ଼ିଶାରେ ମଧ୍ୟ ଜ୍ଞାନ ଓ ବିଜ୍ଞାନର ସଂଗ୍ରହ ଓ ସମର୍ଥତା ଗୁଡ଼ାକ ବହୁ ଗୁଣରେ ବୃଦ୍ଧି ପାଉଥିଲେ ମଧ୍ୟା ଏଠାରେ ଆମେ ପାରସ୍ପରିକ ସମ୍ବନ୍ଧ ତଥା ଅନୁରାଗ

ଗୁଡ଼ିକର କ୍ଷେତ୍ରରେ ଅତ୍ୟନ୍ତ ଅବୈଜ୍ଞାନିକ ଏବଂ ଅଶାଳୀନ ହୋଇ ରହିଛି । ବଡ଼ ମାଛମାନେ ସାନ ମାଛ ମାନଙ୍କୁ ଖାଇପିବାରେ ଲାଗିଛନ୍ତି ଓ ତା' ପରେ ସେହି ପୋଖରୀରେ ଓଡ଼ିଶୀ ନୃତ୍ୟ, ଓଡ଼ିଶୀ ସଙ୍ଗୀତ ଏବଂ ଓଡ଼ିଆ ସାହିତ୍ୟର ଆଖଡ଼ାମାନ ଚାଲିଛି । ଓଡ଼ିଆ ଅଗ୍ରସର ହେବାରେ ଲାଗିଛି ବୋଲି ବେତନଭୋଗୀ ପ୍ରଚାରକ ମାନେ କେତେ ଛଦ୍ମରେ ଢୋଲ ପିଟିବାରେ ଲାଗିଛନ୍ତି । ମଣିଷ ସହିତ ମଣିଷର ଭେଟ ହୋଇ ପାରୁନାହିଁ । ଆମେ ଉପରିସ୍ଥମାନେ ଯଦି ଓଡ଼ିଶାକୁ ପ୍ରକୃତରେ ଆପଣାର ଭୂଇଁ ବୋଲି ସ୍ୱୀକାର କରି ନେଉଥାନ୍ତୁ, ଯଦି ଆମେ ଓଡ଼ିଶାକୁ ଭଲ ପାଉଥାନ୍ତୁ ଓ ଓଡ଼ିଶାର ମଣିଷମାନଙ୍କୁ ହିଁ ଯାବତୀୟ ସ୍ୱୀକୃତିର ସବାଆଗରେ ରଖି-ଥାନ୍ତୁ, ତେବେ ଆମ ଇସ୍କୁଲମାନଙ୍କରେ ଯାବତୀୟ ଅଧ୍ୟୟନ ଓ ଅଧ୍ୟାପନା ଏପରି ଛତରରେ ପଡ଼ିଥାନ୍ତା କିପରି ? ଆମର ପୋଲିସ, ଆମ ଓକିଲ ଓ ହାକିମମାନେ ଯଦି ପ୍ରକୃତରେ ଓଡ଼ିଶା ସହିତ ସେମାନଙ୍କର ଅସଲ ନାଡ଼ିଟି ଲାଗିଛି ବୋଲି ଅନୁଭବ କରୁଥାନ୍ତେ ଓ ସେହି ଅନୁଭବକୁ ବ୍ୟବହାରରେ ପରିଣତ କରି ଆପ-ଣାକୁ ପରିଚାଳିତ କରୁଥାନ୍ତେ, ତେବେ ଆମର ଲୋକେ ଦିନକୁ ଦିନ ଏପରି ଅଧିକରୁ ଅଧିକ ଅସହାୟ ହୋଇ ପଡ଼ୁଥାନ୍ତେ କିପରି ? ଆମର ରାଜନୀତି ଯଦି ସତକୁସତ ମଣିଷକୁ ଲୋଡ଼ନ୍ତା, ତେବେ ଆମର ପ୍ରତିନିଧି ଓ ରାଜ୍ୟପାଳକମାନେ ସୁସୌନ୍ଦର୍ଯ୍ୟ ଓ ସ୍ୱମଣ୍ଡନରେ ଏପରି ଗୋଟିଏ ଗୋଟିଏ ଶାର୍ଦ୍ଦୂଳ ପରି ଆମର ଭାଗ୍ୟ ଅରଣ୍ୟ ମଧ୍ୟରେ ଆମକୁ ସମ୍ଭବ ହେଲେ କଣ କଞ୍ଚା ଗିଳିପକାଇବାକୁ ମନ କରୁଥାନ୍ତେ କିପରି ? ଆମ ଓଡ଼ିଶାର ନେତୃତ୍ୱ ଗୁଡ଼ିକ ଯଦି ସବାଆଗ ଓଡ଼ିଶାକୁ ସୁନ୍ଦର କରି ଗଢ଼ିବାକୁ ଇଚ୍ଛା କରୁଥାନ୍ତେ, ତେବେ ତାହା ଏପରି ଖର୍ବ ହୋଇ-ଥାନ୍ତେ କିପରି ଏବଂ ଖର୍ବ ହୋଇଥିବାରୁ ଏଭଳି ଉଗ୍ର ଓ ଉନ୍ମତ୍ତ ହୋଇ ରହିଥାନ୍ତେ କିପରି ?

୧୯୬୦ ମସିହାରୁ ଓଡ଼ିଶାର ବିବିଧ ସାମୂହିକ କ୍ଷେତ୍ରରେ ଏହି ଭୂମିର ଉନ୍ନୟନ-ସାଧନର ଦାୟିତ୍ୱରେ ରହି ଆସିଥିବା ନେତୃତ୍ୱଗୁଡ଼ିକର ଯଦି ଏକ ଗୁଣାତ୍ମକ ମୂଲ୍ୟାୟନ କରାଯାଏ, ତା ହେଲେ ଆମକୁ କ୍ରମଶଃ ତଳକୁ ଓ ଆହୁରି ତଳକୁ ଆମ ପ୍ରମାଣପର୍ଦ୍ଦିଟିର ବିନ୍ଦୁଟିକୁ ଟାଣିବାକୁ ପଡ଼ିବ । ଅର୍ଥାତ୍, ପଚିଶି ବର୍ଷ ତଳେ ଓଡ଼ିଶାରେ ଯେଉଁମାନେ ଆମର ରାଜନୀତିରେ, ଶାସନରେ, ଶିକ୍ଷାରେ, ନିର୍ମାଣକାରୀ ଯୋଜନା ଗୁଡ଼ିକରେ ଓ ଏପରି ସରକାର ନାମକ ଏକ ସର୍ବନିୟନ୍ତା ତନ୍ତ୍ରକୁ ସଚଳ ଓ ସକ୍ରିୟ କରି ରଖିବାରେ ଦାୟିତ୍ୱରେ ରହିଥିଲେ, ପଚିଶି ବର୍ଷ

ପରେ ସେହିସବୁ ସ୍ଥାନରେ ସେମାନଙ୍କ ଠାରୁ କ୍ରମଶଃ ନିକୃଷ୍ଟତର ଅର୍ଥାତ୍ ଅଧିକ ଅଯୋଗ୍ୟ ବ୍ୟକ୍ତିମାନେ ହିଁ ଆସି ରହିଲେ । ସେତେବେଳେ ହୁଏତ କେବଳ ଦ୍ୱିଭୁଜମାନେ ଥିଲେ ଓ ଏବେ ଦଶ ଓ ଦ୍ୱାଦଶଭୁଜମାନେ ରହିଛନ୍ତି, ସେତେବେଳର ସେମାନେ ଅପେକ୍ଷାକୃତ କମ୍ ଚତୁର ଓ ଧୂର୍ତ୍ତ ଥିଲେ ଓ ଏବର ଏମାନେ ଅଧିକ ଚତୁର ଓ ଧୂର୍ତ୍ତ ବୋଲି ଜଣା ପଡ଼ୁଛନ୍ତି । ମାତ୍ର, ପ୍ରକୃତରେ କିନ୍ତୁ ହୋଇପାରିବ ବୋଲି ସେତେବେଳେ ଆମର ଜାତୀୟତାପ୍ରିୟ ଥାନ ମାନଙ୍କରେ ଯେତିକ ବିଶ୍ୱାସ ଥିଲା ବା ଅଙ୍ଗୀକାର ବଦ୍ଧତାର ଯେତିକ ବୋଧ ରହିଥିଲା, ବର୍ତ୍ତମାନ ତାହାର ଦଶାଂଶ ବା ଦ୍ୱାଦଶାଂଶ ମଧ୍ୟ ନାହିଁ । ଓଡ଼ିଶାକୁ ପ୍ରକୃତରେ ଭଲ ପାଉଥିବା ମଣିଷମାନେ ସେସବୁ ସ୍ଥାନରେ ଥିଲେ ଏହି ଅଧୋଗମନ କାହିଁକି ହୁଅନ୍ତା ? ଭାରତର ଏକ ପ୍ରାଚୀନ ଉପନିଷଦର ଉକ୍ତିରୁ ଶିଖ ନେଇ କହିଲେ, ଏମାନେ ସମସ୍ତେ ମୂଳତଃ ନିଜପାଇଁ ଓଡ଼ିଶାକୁ ଆବୋରିଛନ୍ତି, ଓଡ଼ିଶା ପାଇଁ ଓଡ଼ିଶାକୁ ଅହେତୀ ଅବୋରି ନାହାନ୍ତି । ତେଣୁ, ବିଦ୍ୟାବନ୍ତ ଡ଼ାଆଣୀ ପରି ଖାଲି ରକ୍ତ ଶୋଷି ନେଉଛନ୍ତି, ଲକ୍ଷ୍ମୀ ଘରକୁ ଅଧିକରୁ ଅଧିକ ଲକ୍ଷ୍ମୀହୀନ କରିବାରେ ହିଁ ସହାୟତା କରୁଛନ୍ତି । ବର୍ତ୍ତମାନର ପ୍ରାୟ ସବୁପାକ ରନ୍ଧା ଅବିବେକୀମାନଙ୍କ ହାତରେ ରହିଛି । ସେହି ଅବିବେକୀମାନଙ୍କୁ ଭଗବାନ ବି ପାରୁନାହାନ୍ତି । ଏମାନେ ସମସ୍ତେ ପ୍ରାୟ ଷଡ଼ଯନ୍ତ୍ର କଲାପରି ଭବିଷ୍ୟତ ବଂଶଧରମାନଙ୍କୁ ମଧ୍ୟ ଆହୁରି ଅଧିକ ଅବିବେକୀ ଏବଂ ଅବଜ୍ଞାପ୍ରିୟ କରିବାରେ ଲାଗିଛନ୍ତି ।

ସ୍ୱାଧୀନତା ପରେ ଭାରତବର୍ଷ ଏହି ମଣିଷକୁ ହିଁ ସବାବଡ଼ ପ୍ରତିଷ୍ଠା ଦେବା ଲାଗି ନିଜକୁ ନିର୍ମାଣ କରି ଆଣିଥାନ୍ତା । ଆମର ଏଠି ଓଡ଼ିଶାରେ ମଧ୍ୟ ସ୍ଥାନୀୟ ସ୍ତରରେ ପ୍ରଧାନତଃ ତାହାହିଁ ହୋଇଥାନ୍ତା । ତାହା ହୋଇ ପାରିଲା ନାହିଁ । ଦ୍ରବ୍ୟ ବଢ଼ିଲା, ସାଧନ ବଢ଼ିଲା, ସୌକର୍ଯ୍ୟଗୁଡ଼ାକ ହୁଁ ହୁଁ ହୋଇ ବଢ଼ିବାରେ ଲାଗିଲା, ମାତ୍ର ମଣିଷକୁ ଯଥାସମ୍ଭବ ଅଧିକ ଚତୁରତାର ସହିତ ହଟାଇ ରଖିବାର ଯନ୍ତ୍ରମାନ ଗଢ଼ାଗଲା । ଅଟ୍ଟାଳିକାମାନେ ଉଚ୍ଚରୁ ଆହୁରି ଉଚ୍ଚ ଦେଖାଗଲେ, ମାତ୍ର ଅନ୍ୟାୟ ବଢ଼ିଲା, ଅସମାନତା ବଢ଼ିଲା,— ଉପେକ୍ଷା କରି ଚାଲିଯିବାକୁ ହିଁ ସବୁଠାରୁ ବୃହତ୍ତ ବିଚକ୍ଷଣତା ବୋଲି ବିଚାର କରାଗଲା । ତରୁଣମାନଙ୍କୁ ମଧ୍ୟ ବୁଢ଼ା କରିଦେବାର ସବୁ ପ୍ରକାରର ସୁସ୍ୱାଦୁଯୁକ୍ତ ଫିସାଦ ଆରମ୍ଭ ହୋଇଗଲା । ଆମ ସାହିତ୍ୟରେ ବି ତରୁଣମାନେ, ଶାସ୍ୟବାନ୍‌ମାନେ ବାର୍ଦ୍ଧକ୍ୟର, ଅପଚୟର ଏଲିଜି ଗାନ କଲେ । ଆହ୍ୱାନଗୁଡ଼ିକୁ ଯେପରି ମୋଟେ ଅନୁଭବ କରି ନହେବ, ସେଥିଲାଗି ଆମର

ଗୁରୁଜନମାନେ ଆମକୁ ଅନୁରୂପ ଫୁଲଟିକୁ ସୁଙ୍ଘାଇ ଦେଇ ଆମକୁ ମେଣ୍ଢା କରି ରଖିଲେ । ଆମର ଧର୍ମସ୍ଥ ଅଧୀଶ୍ୱରମାନେ ରାଜାମାନଙ୍କ ସହିତ ସାଲିଶ କଲେ, ଓ ମଣିଷକୁ ଶୀତଳ ହୋଇ ରହିବାର ଏହି ପ୍ରଚିଷ୍ଟାରେ ଚମତ୍କାର ଭାବରେ ସାହାଯ୍ୟ କଲେ । ଠାକୁରମାନେ କ୍ଷମତାସୀନ ଚଣ୍ଡାଳମାନଙ୍କ ଘରେ ପୋଷା ହୋଇ ରହିଲେ, ଦରବାରମାନଙ୍କରେ ମଙ୍ଗଳାଷ୍ଟକ ଗାନ କଲେ । ମଣିଷକୁ ପାସୋରି ଦେଲେ ଏବଂ ଯେତେବେଳେ ମଣିଷକୁ କେଉଁ ଅକୁଶଳତାର ସହିତ ପାସୋରି ଦିଆଗଲା, ସେତେବେଳେ ଆମ ଠାକୁର ଗୁଡ଼ାକ ମଧ୍ୟ ଆମର ଆଉ କେଉଁ କାମରେ ଲାଗିଥାନ୍ତେ ?

ଏକ ଦୁଃସମୟ ଆସି ପହଞ୍ଚିଲେ ଅଯୋଗ୍ୟମାନେ ଗୋଟାଏ ଦେଶକୁ ବା ରାଜ୍ୟକୁ ଭୋଗ କରନ୍ତି ସତ, ମାତ୍ର, କୌଣସି ଦେଶ ବା ରାଜ୍ୟ କଦାପି ସେହି ଅଯୋଗ୍ୟମାନଙ୍କର ନୁହେଁ । ଯେଉଁମାନେ ସଂପୂର୍ଣ୍ଣ ଆହ୍ୱାନଟିକୁ ବାରିପାରନ୍ତି ଓ ସଂପୂର୍ଣ୍ଣ ଭାବରେ ତାହାର ଜବାବ ଦେବା ଲାଗି ସବାଆଗ ନିଜେ ପ୍ରସ୍ତୁତ ହୋଇ ବାହାରନ୍ତି, ଯେଉଁମାନେ ନିଜର ଭାଗ୍ୟକୁ ବଞ୍ଚାଣୀ କରିବେ ବୋଲି ସମୂହର ଭାଗ୍ୟକୁ ଧୋକା ଦେବାକୁ ହିଁ ହୀନତମ ଅପରାଧ ବୋଲି ଗଣନ୍ତି, ଭୂମିଟି ଯଥାର୍ଥରେ ସେହିମାନଙ୍କର । ଦାୟାଦ ସେଇମାନେ ହେବେ । ଶାସ୍ତ୍ରରେ ସେହିଭଳି ମଣିଷଙ୍କୁ ହିଁ ସାହସୀ ବୋଲି ଚିରକାଳ କୁହାଯାଇଛି । ଚତୁର୍ଦ୍ଦିଗରେ ବହୁବିଧ ଆନୁଷ୍ଠାନିକତାର ପକ୍ଷ ବିସ୍ତାର କରି ସବୁଯାକ ଖାନ୍ଦାନ ଆମକୁ ବି ଝଡ଼ୁ ହୋଇ ରହିଯିବା ଲାଗି ପ୍ରରୋଚନା ଦେଉଥିବା ସମୟରେ ଯିଏ ତଥାପି ସାହସର ସହିତ ଦେଖିବାକୁ ମନ କରିବ, ସିଏ ଅବଶ୍ୟ ଦେଖିପାରିବ; ଯିଏ ତଥାପି ଏହି କବାଟଗୁଡ଼ାକ ଉପରେ ଧକ୍କା ମାରିବ, ତା'ଲାଗି କବାଟ ଅବଶ୍ୟ ଖୋଲିଯିବ । ମାତ୍ର ତାଙ୍କୁ ଏକା-ବେଳେକେ ଅନ୍ୟ ପ୍ରକାର ହେବାକୁ ପଡ଼ିବ । ଅଧ୍ୟାପକ ହୋଇଥିଲେ ଅନ୍ୟ ପ୍ରକାର ଅଧ୍ୟାପକ ହେବାକୁ ପଡ଼ିବ, ଛାତ୍ର ହୋଇଥିଲେ ଅନ୍ୟ ପ୍ରକାର ଛାତ୍ର ହେବାକୁ ପଡ଼ିବ । ସିଏ କୌଣସି ନେତୃତ୍ୱର ସ୍ଥାନରେ ରହିଥିଲେ ତାକୁ ଅନ୍ୟ ଏକ ପ୍ରକାରର ନେତୃତ୍ୱ ଦେବାର ଭାଜନ ହେବାକୁ ପଡ଼ିବ । ଆଧୁନିକ ମାନବ ଜାତିର ଜଣେ ବନ୍ଧୁ ଶ୍ରୀଯୁକ୍ତ ଆଲ୍‌ବର୍ଟ ସ୍କାଇତ୍‌ଜର୍ ଥରେ କହିଥିଲେ ଯେ, ଅନ୍ୟମାନଙ୍କଠାରୁ ଅନ୍ୟ ପ୍ରକାରର ହେବା,—ଅର୍ଥାତ୍ ଗୋଠରେ ସାମିଲ୍ ନ ହୋଇଯିବା,—ତାହା ହେଉଛି ସବୁଠାରୁ

ଅଧିକ କଷ୍ଟକର । ଗୋଠ ଭିତରେ ସାମିଲ୍ ହୋଇଯିବାକୁ ହିଁ ସବୁଠାରୁ ଅଧିକ ନଗପଦ ବୋଲ'ମାନ ନେଇଥିବା ମଣିଷମାନେ କଦାପି ଗୋଠକୁ ବଦଳାଇ ପାରିବେ ନାହିଁ ।

ଓଡ଼ିଶାରେ ଯିଏ ତଥାପି କଳା ହୋଇ ରହିଥିବା ଦୁଆରଗୁଡ଼ିକୁ ଫିଟାଇ ଦେବାକୁ ବାହାରିବ, ତାକୁ ଏହି ଭୂମିର ତିନି ଜଣ ବୀରଙ୍କଠାରୁ ତିନି ପ୍ରକାରର ପ୍ରେରଣା ଗ୍ରହଣ କରିବାକୁ ପଡ଼ିବ । ମଧୁସୂଦନଙ୍କର ସ୍ୱାଭିମାନ, ଫକୀରମୋହନଙ୍କର ଉଦ୍ୟମଶକ୍ତି ଏବଂ ଗୋପବନ୍ଧୁଙ୍କର ସମ୍ବେଦନଶୀଳତା,—ତିନୋଟିଯାକକୁ ନିଜ ଭିତରକୁ ଏକାଠି ଆବାହନ କରି ଆଣି ସମ୍ମୁଖକୁ ପାଦ ପକାଇ ପାରିଲେ ଯାଇ ଆମେ ଏହି କାଳକୁ ହଟାଇ ଦେଇ ପାରିବା । ଏବଂ କାଳ ହଟିଲେ ଯାଇ ମଣିଷ ଜିତିବ, ମଣିଷ ତିଷ୍ଠି ରହିପାରିବ । ମୋର ଏକ ଭୂମି ଅଛି, ସେହି ଭୂମିରେ ମୋର ଚେର ରହିଛି,—ମୁଁ ସେହି ଭୂମିକୁ ନେଇ ଗର୍ବ କରେ, ତାହାକୁ ସୁନ୍ଦର ଓ ଜୀବନଯୋଗ୍ୟ କରି ଗଢ଼ିବାରେ ମୁଁ ନିଜ ଭିତରର ସର୍ବୋତ୍ତମ ନିଷ୍ଠା ଓ ସର୍ବୋତ୍ତମ ଶକ୍ତିକୁ ସମର୍ପିତ କରି ରଖିବାକୁ ସଙ୍କଳ୍ପ କରିଛି ଓ ଆଦୌ କୌଣସି ପ୍ରକାରର ମିଛ କୋଳାହଳ ନକରି ସେହି ସଙ୍କଳ୍ପ ଅନୁସାରେ କାର୍ଯ୍ୟ ମଧ୍ୟ କରୁଛି । ଜଣେ ଜଣେ ଓଡ଼ିଆ ହିସାବରେ ଏହାହିଁ ଆମ ସମସ୍ତଙ୍କର ସ୍ୱାଭିମାନ । ଆମ ଭିତରୁ ଯେଉଁମାନେ ଓଡ଼ିଶାକୁ ସାନ ଭୂଇଁଟିଏ ଏବଂ ଓଡ଼ିଆ ଭାଷାଟିକୁ ସ୍ଥାନୀୟ ସାନ ଭାଷାଟିଏ ବୋଲି ମନେକରି ସାଧାରଣମାନଙ୍କ ଭିତରେ ସାମନ୍ତ ବୋଲାଇବାର ଅଭିପ୍ରାୟରେ ଅଥବା ଏକାବେଳେକେ ଆକାଶ-ସ୍ତରରେ ଗୋଷ୍ଠୀକୁଗୋଷ୍ଠୀ ଯଶ କମାଇବେ ବୋଲି ଏଠି ନିଜର ଅନ୍ତବୁଜୁଳା ଭିତରେ ଇଂରାଜୀକୁ ହିଁ ଅଧିକତର ସ୍ନେହର ଦରବଟିଏ ପରି ସାଇତି ରଖିଛନ୍ତି ଓ ତେଣୁ ଓଡ଼ିଆଙ୍କ ଭିତରେ ଇଂରାଜୀରେ କଥା କହୁଛନ୍ତି ବା ଓଡ଼ିଆରେ ଲେଖିବା ଅପେକ୍ଷା ଆଗ ଇଂରାଜୀରେ ଲେଖୁଛନ୍ତି, ସ୍ୱାଭିମାନ ହରାଇ ସେମାନେ ସତେ ଆମ ସମୂହଟିର ଉଦୟ ପଥକୁ କେତେ ବଣା କରି ନ ରଖିଛନ୍ତି । ଆମର ସ୍ୱାଭିମାନ,—ତାହାହିଁ ହେଉଛି ଏକ ସମୂହ ହିସାବରେ ଆମ ସମସ୍ତଙ୍କର ସର୍ବନିମ୍ନ ଇଜ୍ଜତ । ଓଡ଼ିଶାରେ ସେହି ଇଜ୍ଜତଟି ପାଇଁ ଲଢ଼ିବାର ବି ଏକ ଅବକାଶ ରହିଛି । କାରଣ ବଡ଼ ପୁରୁଷମାନେ ଏବେ ମଧ୍ୟ ଆମ ଭିତରେ ରହିଛନ୍ତି ।

ଓଡ଼ିଶାର ଫକୀରମୋହନ ସେନାପତିଙ୍କ ପାଖରେ ସମ୍ବଳ ବୋଲି କିଛି ନଥିଲା, ମାତ୍ର ଉଦ୍ୟମବଳ ଭର୍ତ୍ତି ହୋଇ ରହିଥିଲା । ସେହି କାରଣରୁ ତାଙ୍କ ସମସ୍ତର ସିଂହମାନେ ଯେତେ କରି ନ ପାରିଲେ ଓ ଯେତେ ପୌରୁଷର ପରିଚୟ ଦେଇ ନ ପାରିଲେ, ଫକୀରମୋହନ ତା'ଠାରୁ ପ୍ରକୃତରେ ଅନେକ ଅଧିକ ସାଧି କଲେ, ଆପଣାର ସେନାପତି ପଦକୁ ସେ ସାର୍ଥକ କରାଇଲେ । ଓଡ଼ିଶାରେ ଆଜି ସେନାପତିଙ୍କର ପୂଜା ହେଉଛି, ମାତ୍ର ସେନାପତିଙ୍କର ଉଦ୍ୟମ କାହିଁ ? ଓଡ଼ିଶାରେ କୁଆଡ଼େ ଭାରତର ଅନ୍ୟ ରାଜ୍ୟଗୁଡ଼ିକର ତୁଳନାରେ ଅଧିକ ମଠର ତୋଳା ହୋଇଛି, ଅଧିକ ଦେବତାଙ୍କର ଥାପନା ହୋଇଛି,—ଏବଂ ସେହି ଅନୁପାତରେ ଆମ ଭିତରେ ଅଧିକ ଅନିଚ୍ଛା ଏବଂ ଅଧିକ ଆଳସ୍ୟକୁ ମଧ୍ୟ ପ୍ରଶ୍ରୟ ଦିଆଯାଇଛି କି ? ସେନାପତି ଫକୀରମୋହନ ପ୍ରାୟ ଶହେ ବର୍ଷ ତଳେ ଯେଉଁ ଅପ୍ରତିହତ ଉଦ୍ୟମ ନିଷ୍ଠାର ଦୃଷ୍ଟାନ୍ତ ଦେଖାଇଥିଲେ, ସେହି ଦୃଷ୍ଟିରୁ ହିଁ ତାଙ୍କ ଜୀବନ ଓ କୃତିଗୁଡ଼ିକର ଅଧିକ ଆଲୋଚନା ହୋଇପାରିବା ଉଚିତ । ଓଡ଼ିଶାରେ ଥାଇ ମଧ୍ୟ ଓଡ଼ିଶାରେ କେବେହେଲେ କିଛି ହୋଇ ପାରିବ ନାହିଁ ବୋଲି ଯେଉଁ ଶିଷ୍ଟମାନେ ଆମକୁ ଏବେ ମଧ୍ୟ ସାଧୁବାଣୀ ଶୁଣାଇବାରେ ଲାଗିଥାଆନ୍ତି, ସେମାନଙ୍କର ଥରେ ଏକାବେଳେକେ ମୁହାଁମୁହିଁ ହୋଇ ଫକୀରମୋହନଙ୍କ ଆଡ଼କୁ ଅନାଇ ଦେଖିପାରିବା ଉଚିତ ।

ଗୋପବନ୍ଧୁ ଦୟାଳୁ ନଥିଲେ, ସେ ସମ୍ବେଦନଶୀଳ ଥିଲେ । ଆମର ବର୍ତ୍ତମାନ ପୃଥିବୀରେ ସେହି ସମ୍ବେଦନଶୀଳତା ହିଁ ଯନ୍ତ୍ରଁ ଯନ୍ତ୍ରଁ ଆଧୁନିକ ଜୀବନ ଦୃଷ୍ଟିର ଅସଲ ପରିପୂରକ ଓ ପ୍ରତିଫଳକ ରୂପେ ସ୍ୱୀକୃତ ହେବାରେ ଲାଗିଥିବ । ଓଡ଼ିଶାରେ ଆମେ ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ ସେତିକି ଅଧିକ ଅନ୍ତରଙ୍ଗ ଭାବରେ ଚିହ୍ନିବାକୁ ସମର୍ଥ ହେଉଥିବା । ଏହି ସମ୍ବେଦନଶୀଳତା ରହିଥିଲେ ଓ ଆମର ଯାବତୀୟ ଆଚରଣରେ ପୁରୋଭାଗରେ ରହି ଆମକୁ ଚଳାଇ ପାରୁଥିଲେ । ଆମେ ଏହି ସାନ ପରିଧି ମଧ୍ୟରେ ବି ବିଶ୍ୱଜନୀନତାର ଆସ୍ୱାଦନ ଲାଭ କରି ପାରିବା । ଗୋପବନ୍ଧୁଙ୍କର ଉତ୍କଳୀୟତା ଏବଂ ବିଶ୍ୱଜନୀନତା ମଧ୍ୟରେ ଆଦୌ କୌଣସି ଫରକ ନଥିଲା । ସେ କେବଳ ଓଡ଼ିଶା ପାଇଁ କେବେହେଲେ କିଛି କରୁ ନଥିଲେ, କାରଣ, ଓଡ଼ିଶାରେ ସେ ଯାହାକିଛି କରୁଥିଲେ, ତାହା ମୂଳତଃ ମନୁଷ୍ୟର

ବିମୋଚନ, ମନୁଷ୍ୟର ଗୁଡ଼ାମୁକ୍ତି ତଥା ମନୁଷ୍ୟର ଉଦୟ ଲାଗିହିଁ ଉଦ୍ଦିଷ୍ଟ ହୋଇ ରହିଥିଲା । ସେଇଥିଲାଗି ଗୋପବନ୍ଧୁ ଯେତେବେଳେ ଯେଉଁଠାରେ ଥିଲେ ମଧ୍ୟ ନୀଳାଚଳରେ ଥିବାପରି ଅନୁଭବ କରୁଥିଲେ ଓ ନୀଳାଚଳରେ ରହିଥିବା ସମୟରେ ସମଗ୍ର ପୃଥିବୀରେ ରହିଥିବା ପରି ଅନୁଭବ କରୁଥିଲେ । ତାହା ହେଉଛି ଏକ ଅନ୍ୟ ସ୍ତରର ସଚେତନତା, ଏକ ଅନ୍ୟ ସ୍ତରର ସଂବେଦନା । ସେଠି ଅବସ୍ଥାନ କରୁଥିଲେ ମଣିଷର ସୀମାଗୁଡ଼ିକ ଆଉ ଆମ ଏବର ଦୁଷ୍ଟ ସୀମାରେଖା ହୋଇ ରହେନାହିଁ, ଆମର କଥା ଓ ଚିନ୍ତା ଭିତରୁ ସକଳ ପ୍ରକାର ଆତ୍ମପ୍ରତାରଣା ବିଦାୟ ହୋଇ ଚାଲିଯାଆନ୍ତି । ସେତେବେଳେ ଗୋଟିଏ ଠାବକୁ ଦେଖୁଥିଲେ ମଧ୍ୟ ସକଳ ଠାବକୁ ଦେଖୁଥିଲା ପରି ଓ ଛୁଇଁକରି ରହିଥିବା ପରି ମନେହୁଏ । ଗୋଟିଏ ପୃଷ୍ଠ ଭିତରେ ସବୁଯାକ ପୃଷ୍ଠକୁ ଦେଖିହୁଏ । ନିଜର ସବୁ କାମ ସତେଅବା କେବଳ ତାଙ୍କର କାମ ପରି ଅନୁଭବ ହୁଏ । ସଂବେଦନଶୀଳତା ଏକ ଗଭୀରତମ ଗାରକୁ ସ୍ପର୍ଶ କଲେ ତାହାହିଁ ଆମକୁ ଏକ ଆଧ୍ୟାତ୍ମିକ ବିଚରଣ ସ୍ତରର ଅନୁଭୂତି ଆଣି ଦେଇଥାଏ । ଆମ ଅହଂକାରଗତ ଯାବତୀୟ ଉଗ୍ରତାରୁ ଆମକୁ ମୁକ୍ତ କରେ, ସତେଅବା ଏକ ଦୈତ୍ୟ ପରି ଅଳପ ଓ ଉଗ୍ର ହୋଇ ରହିବାର ଅନେକ ପ୍ରମାଦରୁ ଆମକୁ ରକ୍ଷା କରେ ।

ସମସ୍ତ ବିଷୟକୁ ଟିକିର ପ୍ରତିପାଦ୍ୟଗୁଡ଼ିକୁ ଏକତ୍ର ଗୁନ୍ଥି ଆଣି କହିବାକୁ ଗଲେ, ଭାରତବର୍ଷ ରହିଲେ ଯାଇ ଓଡ଼ିଶା ରହିବ ଏବଂ ଭାରତ ବର୍ଷର ଯାବତୀୟ ଅଭିଜ୍ଞତା ତଥା ନେତୃତ୍ୱ ଏହି ଦେଶର ମଣିଷକୁହିଁ ସବାଆଗରେ ରଖି ପାରିଲେ ଯାଇ ଭାରତବର୍ଷ ରହିଲା ପରି ରହିବ । ଓଡ଼ିଶାରେ ମଧ୍ୟ ତାହାହିଁ ଆତ୍ମମୁଖ୍ୟ ହୋଇ ରହିବ । ଓଡ଼ିଶାରେ ଓଡ଼ିଶା ପାଇଁ ହୋଇଥିବା ଅଧିକାଂଶ ଆନ୍ଦୋଳନ ଏହି ବିଷୟରେ ସର୍ବଦା ଯଥେଷ୍ଟ ସଚେତନ ରହି ପାରି ନାହିଁ ଏବଂ ତେଣୁ ଓଡ଼ିଶା ଭାରତ ବର୍ଷର ମୁଖ୍ୟ ଧାରାଟିରୁ ସତେଅବା ଭିନ୍ନ ଅଲଗା ହୋଇ ରହିଯାଇଛି । ଭିତରେ କେଉଁଠି ଏକ ହୀନମନ୍ୟତା ରହିଥିଲେ ମଣିଷ ଅତି ବେଶୀ କେବଳ ନିଜକୁ ଏକମାତ୍ର କେନ୍ଦ୍ରରୂପେ ଦେଖି ସେହି ମୁତାବକ ନାନା ଅଳ୍ପତା ଦ୍ୱାରା ପ୍ରମତ୍ତ ସାନ ପରିଧିଟିଏ କାଟି ତାହାର ଭିତରେ ତପ୍ତ ହୋଇ ରହିବାକୁ ଭାରି ପ୍ରରୋଚନା ପାଇଥାଏ । ଓଡ଼ିଶାର ସେହି ଦୈନ୍ୟ କଟିଯିବା ଉଚିତ । ଦୈନ୍ୟଗୁଡ଼ିକୁ

ଲୁଚାଇ ରଖିଥିବା ପର୍ଯ୍ୟନ୍ତ ଦୈନ୍ୟ ଆଦୌ କଟେ ନାହିଁ । ଦୈନ୍ୟକୁ ଅତିକ୍ରମ କରିବାକୁ ହୁଏ । ଶ୍ରଦ୍ଧାକୁ, ସ୍ୱୀକୃତିକୁ ଓ ସଂବେଦନଶୀଳତାକୁ ହିଁ ଅସଲ ବଳରୂପେ ଗ୍ରହଣ କରି ବଞ୍ଚିପାରିଲେ ଯାଇ ସେହି ଅତିକ୍ରମଣ ସମ୍ଭବ ହୋଇଥାଏ । ସେତେବେଳେ ନିଜର ଭୂଇଁଟି ପ୍ରକୃତରେ ଭଲଲାଗେ ମାତ୍ର ଅପର ପକ୍ଷରେ ଭୂଇଁଟିର ଚତୁର୍ଦ୍ଦିଗରେ ମିଛ ପାଚେରୀମାନ ଉଠାଇ ଆକାଶଟାକୁ ସାନ କରି ରଖିବାର ଆଦୌ କୌଣସି ଜ୍ଞାନ ପ୍ରୟାସ କରା ଯାଏନାହିଁ । ଓଡ଼ିଶାର ନୂତନ ନେତୃତ୍ୱ ଏଣିକି ଏଠି ଅଧିକରୁ ଅଧିକ ଗ୍ରହଣଶୀଳ ହେବ, ଆମର ଏହି ସ୍ୱାମୀପ୍ୟ ଘରଟିରେ ଅଧିକରୁ ଅଧିକ ଝରକା ଖୋଲିଦେବାକୁ ଚେଷ୍ଟା କରିବ । ଆମ ନିଜ ଭିତରକୁ ଅଧିକ ଝରକା ଖୋଲାଇବ, ଆମ ବାହାରେ ରହିଥିବା ବୃହତ୍ତର ବିଶ୍ୱଟି ଆଡ଼କୁ ମଧ୍ୟ ଝରକାଗୁଡ଼ିକୁ ଖୋଲିଦେବ ।

ଏବଂ, ସର୍ବଶେଷରେ, ଆମେ ଯେଉଁମାନେ ଓଡ଼ିଶାରେ ଅପେକ୍ଷାକୃତ ଅଧିକ ଭାଗ୍ୟବାନ,-ଯେଉଁମାନଙ୍କର ଶିକ୍ଷା ରହିଛି, ସୁଯୋଗ ରହିଛି,-ଏଠାରେ ସେହିମାନଙ୍କର ହିଁ ଅଧିକ ଦାୟିତ୍ୱ ରହିଛି । ନିଜ ଭିତରେ ଖରୁଡା ଗୁଡ଼ାକୁ କାଟି ଆହ୍ୱାନ ମାନ ବାହାରି ଆସିବା ଓ ଆପଣାକୁ ଅଧିକରୁ ଅଧିକ ସମ୍ମତ ତଥା ବଳିଷ୍ଠ ଭାବରେ କାମରେ ଲଗାଇବା ହିଁ ସେମାନଙ୍କର ସର୍ବପ୍ରଥମ କର୍ତ୍ତବ୍ୟ ହେବ । ଦ୍ୱିତୀୟତଃ, ସେମାନେ ଅଲଗା ପ୍ରକାରେ, ଅଲଗା ଆଖିରେ, ନିଜକୁ ଗଢ଼ିବେ । ଅର୍ଥାତ୍ ପୁରୁଣା ଗୁଳାଗୁଡ଼ିକ ଉପରେ ଯିବାଲାଗି ମନା କରିବେ । ଶ୍ରଦ୍ଧା-ଶକ୍ତି ବଢ଼ିଲେ ଯାଇ ମନା କରିପାରିବାର ସାହସ ଆସିବ । ଭବିଷ୍ୟତର ଓଡ଼ିଶା ସାହସୀମାନଙ୍କ ଦ୍ୱାରା ହିଁ ଗଢ଼ା ହେବ । ଏବଂ, ଏଇଠି ଆମ ସାନ ଓଡ଼ିଶାଟିକୁ ସମୁଚିତ ଓ ସୁନ୍ଦର କରି ଗଢ଼ିବା ଦ୍ୱାରା ହିଁ ଆମେ ସମଗ୍ର ଭାରତବର୍ଷକୁ ମଧ୍ୟ ଗଢ଼ିବାରେ ସର୍ବୋତ୍ତମ ସାହାଯ୍ୟ କରିପାରିବା ।

